ସନ୍ଥକବି କବୀର ସମ୍ମାନପ୍ରାପ୍ତା
ଡ଼କ୍ଟର ପ୍ରତିଭା ଶତପଥୀ

# ଅଜରାମର



ପଶ୍ଚିମା ପବ୍ଲିକେଶନ୍

ଅଜରାମର (କବିତା ସଂକଳନ)
ଡକ୍ଟର ପ୍ରତିଭା ଶତପଥୀ

ପ୍ରକାଶକ : ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ,
ଭୁବନେଶ୍ୱର-୧୨, ଫୋନ୍: ୯୪୩୭୫୦୦୭୬୭
ମୁଦ୍ରଣ : ଡୁଡୁଲି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍, ଭୁବନେଶ୍ୱର
ପ୍ରଚ୍ଛଦ: ଅଶୋକ ମହାନ୍ତି
ପ୍ରଥମ ପ୍ରକାଶ : ୨୦୧୯
ମୂଲ୍ୟ : ୧୧୦.୦୦

**AJARAMARA**
Poetry collection by **Dr. Prativa Sathpathy**

Published by Paschima Publications
1882, Nayapalli,
Bhubaneswar, Odisha-12
1st Edition: 2019
Price : 110.00
Email: paschima1990@yahoo.com

*For on line purchase please visit :*
www. odishaestore.com
www.ritikart.com
www.amazon.in

## ଉତ୍ସର୍ଗ

ମୋର ସଂରଚନା କର୍ମକୁ ଶ୍ରଦ୍ଧା ଓ ଆନ୍ତରିକତା ସହ
ଅବିରତ ଉତ୍ସାହ ପ୍ରଦାନକରି ଧନ୍ୟ କରିଥିବା
ମୂର୍ଦ୍ଧନ୍ୟ ସାହିତ୍ୟିକ ୰ ମହାପାତ୍ର ନୀଳମଣି ସାହୁଙ୍କ
ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ:-

# ସୂଚୀପତ୍ର

## ଡାକ କେବେ ଶୁଭେ ନାହିଁ

କାଳିଚିଆ ବଉଦଟା ସେଦିନ
ଘୋଡ଼େଇଥିଲା ଖଣ୍ଡେ ଆକାଶ,
ଦିଶୁନଥିଲା ଆମ ମୁହଁ
ହେଲେ ବି, ମୁହଁ କ'ଣ ଦେଖିବା ଜରୁରୀ
ତୁମର ଓ ମୋର ?

ଦୂରଛଡ଼ା ହୋଇ ଖଣ୍ଡେ ସଫା ବଉଦ
ଭାସି ଚାଲିଗଲା-ତୁମକୁ ବି ଭସେଇ ନେଲା ବୋଧେ
ଲମ୍ବିଥିବା ହାତ ତୁମର ଦୂରେଇ ଗଲା-
ମୁଁ ଡାକିଲି ନାହିଁ।
କହତ, କିଶୋରୀଟିଏ
ସାହସ ପାଇବ କୋଉଠୁ
ଦାଣ୍ଡରେ ଡ଼ାକ ପକାଇବ ତା'ର ସାଙ୍ଗକୁ ?

ଡାକି ତ ପାରିଲି ନାହିଁ ।
କିନ୍ତୁ ଖୁବ୍ ଦୂରରୁ ଡାକୁଥିଲା କିଏ-
ମୁଁ ସ୍ୱର ମିଳେଇଲି,
ହେଲେ, ଡାକ କ'ଣ କେବେ ଶୁଭେ ?
ଯିଏ ଶୁଣେ ସେ ମନକୁମନ ଶୁଣି ପକାଏ ।
କିନ୍ତୁ, ତୁମେ କୁଆଡ଼େ ଉଭେଇ ଗଲ ଯେ ଗଲ
ବର୍ଷ, ମାସ ବିତିଲା- ମୁଁ ଗଲି ପାହାଡ଼ ଆଡ଼େ
ଝରଣାକୁ ଖୋଜିଲି,
ତୁମକୁ ଅବଶ୍ୟ ମୁଁ ଆଉ ଖୋଜିନାହିଁ ।
ଆକାଶ ସାରା ତ ତୁମ ହାତ ଅଙ୍କା ଚିତ୍ର
ତୁମ ସୁଗୋଲ ହସ୍ତାକ୍ଷର,
ଗ୍ରହାନ୍ତରରେ ବୋଧେ,
ପୃଥିବୀରେ ତୁମ ଅଧାଲିଭା ପାଦଚିହ୍ନ ।

ଆମ ବଞ୍ଚିବା ବୋଧେ ଏଇଆ,
ଜଣେ ଅପରକୁ ଛାଡ଼ି ଚାଲିଯିବା-
ଗଛ ବୃକ୍ଷର ଛାଇକୁ ଆବୋରି ଧରିବା-
ତାକୁ ବି ଡେଇଁଯିବା ଦିନେ
ଭୁଲିଯିବା,
କୋଉଠି ବି କେହି ନଥିବା-



# ଗଲଣି ଯେ ସେଦିନୁଁ

ତୁମେ ଚାଲିଗଲଣି ସେଦିନୁଁ
ଅଥଚ ବଂଚି ରହିଚି ମୁଁ-
କେବେ ଭାବିଥିଲି ଘଟିବ ଏକଥା
ତୁମେ ଚାଲିଯିବ, ମୁଁ ଥିବି-
ଏକ କଠୋର ନିୟମରେ ବାଟଚାଲୁଚି ଯେ ପୃଥ୍ୱୀ
ଆମେ ସବୁ ଖେଳଣା ତା' ପାଇଁ-
ତେବେ ବି କେତେ ସତ ଥିଲ ତୁମେ
ତୁମ ବିନା ମୁଁ ଭାବିପାରୁ ନଥିଲି ନିଜକୁ-

ଯେତେ ପ୍ରିୟଜନ ମୋର
ଚାଲିଗଲେ ଜଣକା ଜଣ
ଯେ ବାଟ ସରିବ କେବେ
କେମିତି କ'ଣ
ଆମେ ରହିବା ଏଠି
କାହାକୁ ନେଇ ହସିବା, କାନ୍ଦିବା, କଥା କହିବା
ଗୀତ ଗାଇବା,
ବିଷୁବପଣାକୁ ଗୋଳେଇ କି ପିଇବା
ଗଛଲଟାଙ୍କୁ ଆଉଁସିବା
ଫୁଙ୍କିଦବା ଫୁଲକଢ଼ ଉପରେ
ଧାଡ଼ି ଲାଗିଥିବା ପିଂପୁଡ଼ିଙ୍କୁ ।

ବାରହାତ ଫରଫର ନେତକୁ
ଅନାଇଁ ଅନାଇଁ ଗୀତ ଗାଇବା
ବଣ, ବିଲ, ଝିଲକୁ ଟପିଯିବା-

ଦିନେ ଦିନେ ଏକାଠି ଭାତ ଖାଇବା
ଚାରିଦିଗ ଘୂରିବା, କେତେ କ'ଣ
ପୁଲକ ଓ ହୃଦୟ ବିଦାରକ
କଥା ଗପିବା-
କେହି କାହା ପାଖ ନ ଛାଡ଼ିବା ।

ପାପାନୀ, ତୁମେ, ମୁଁ ଓ ଶତପଥୀବାବୁ
କବିଗୁରୁଙ୍କ ସଂଚୟିତା ପଢ଼ିବା-ଆବୃତ୍ତି କରିବା
ଭାବେ, ଦିନେଦିନେ
କୌଣ ସୂର୍ଯ୍ୟଲୋକ, ଚନ୍ଦ୍ରଲୋକ
ନୂଆ ନକ୍ଷତ୍ର କି ଛାୟାପଥରେ ତୁମେ ଶୋଇଥିବ-
ମୁଁ ମୁଣ୍ଡ ରଖିବି ତୁମ ପାଦତଳେ
ସାରାରାତି ବିତିଯିବ ।

ଯେ ଅଘଟଣ ଘଟେନା କେବେ
ତୁମେ ମତେ କଥା କହିନ
ଆଉ କାବ୍ୟଗାନ କରିନ କେବେ ।
କିନ୍ତୁ ଦିନେ ଯେ ଯିବାକୁ ହେବ,
ଜଣକୁ ଜଣ ପ୍ରିୟଜନଙ୍କୁ
ଛାଡ଼ି କି, ଆମେ ଘାସବୁଦାରେ ପାଦ ଥୋଇବା ।
ସବୁ ସରିଗଲାପରେ ବି
କାନ୍ଦି ନ ପାରିବା-
ଭିତରେ ଭିତରେ ଝୁରି ମରିବା-
ତୁମେ ଚାଲିଗଲାପରେ ବି
ମୋର ଏଇ ନିରୁପାୟ ବଂଚିରହିବା ।

(୰ ମହାପାତ୍ର ନୀଳମଣି ସାହୁଙ୍କୁ ନିବେଦିତ)

□

# ପକ୍ଷୀପ୍ରେମ

ପୂର୍ବଦିଗ ନ ଫାଟୁଣୁ ସେ
ଦେଖିପାରେ ସୂର୍ଯ୍ୟର ନଦିଶିଲା ମୁହଁକୁ,
ଦେଖିପାରେ ଆଲୁଅ
ସଜାଡ଼େ ତା'ର ଦି'ଦିନିଆଁ ବସାଘର
ପତ୍ନୀ, ସନ୍ତାନ, ସଂସାର ।

ତା'ପରେ ନଭୋମଣ୍ଡଳ
ଖାଦ୍ୟ ଯୋଗାଡ଼, ଅଣ୍ଡା ଚିଆଁଙ୍କ ହେପାଜତ
କାଉଁ କାଉଁ ରଡ଼ି ତାଙ୍କର,
ପୁଣି ଦରବ ଧରି ଫେରିଆସେ ବସାକୁ-
ଡର କାହାକୁ, ଭୟ କାହାକୁ ?

ନାହିଁ ବୋଲି ନୁହେଁ ଯେ
ଜନ୍ତୁ, ଛଞ୍ଚାଣ, ଡାମରା କାଉ
ତା' ଭିତରେ ପାତିଥାଏ ସଂସାର ତା'ର
ଯେତେଦୂରରେ ଥାଉ
ଋତୁମତୀ ଘରଣୀର ବେଳଜାଣି, ମନଜାଣି
ଲେଉଟି ଆସେ ତା' ପାଖକୁ-
ପୁଣି ହୁଏତ ନୂଆ ବସା ବାନ୍ଧିବାକୁ ହୁଏ,
କଅଁଳ, ପ୍ରେମମୟ ଜୀବଟିଏ ତ !

□

ଅଥଚ, ମଣିଷ,
ତୁ କେମିତି ଭୁଲିପାରୁ
ତୋ ପିଲା କବିଲା ସ୍ତ୍ରୀରିଙ୍କୁ– ?
ପରଘରେ ପଶୁ
ନହେଲେ ବାଟଘାଟରେ ଏକୁଟିଆ ଝିଅଟିକୁ
ଟାଣିନଉ, ଲଂଗଳାକରୁ, ଜବର ପଡ଼ିଲାତ
ମାରିଦଉ ।
ତୋର ମନଅଛି, ମମତା ଅଛି
ବଳ ଅଛି, ବଂଶ ଅଛି,
ହେଲେ ତୁ କେମିତି ସବୁ ଭୁଲିଯାଉ !

ଚକୁଆ ଚକୋଇ
ସବୁବେଳେ ଏକାଠି
କେହି କାହାକୁ ଛାଡ଼ି ପାରନ୍ତିନି
ଭୁଲିଯାଆନ୍ତି ନାହିଁ ।

ତୋର ମଣିଷରକ୍ତ
ଏତେ ଭୟଙ୍କର, ପାଣିଚିଆ କଳୁଷିତ ଯେ
ତୁ ସ୍ତ୍ରୀରିକୁ, ନାରୀକୁ ଏପରିକି ସଦ୍ୟଗର୍ଭଜାତ
ଝିଅକୁ ବି ଅନାଉଁନା
ରାକ୍ଷସ ପାଲଟିଯାଉ !

ବିଧାତା ଗଢ଼ିଛି ଏ ସଂସାର
କୁନିଛାତିତଳେ ଏତେ ଭଲପାଇବା
ଅଥଚ, ମଣିଷମନରେ ଏତେ ବିଷ, ଏତେଜ୍ୱାଳା !



## ଘାସ ଅରାକ

ତୋ ଛାତିର ସେଇ ଘାସ ଅରାକ
ଏବେ ଜୁଡୁବୁଡୁ, ସେଇ ଚୁପଚାପ୍ ଅଛି ତ ?

ମୋ ପାଖରେ ରହିଚି କବିତାର ଶବ୍ଦ, ସାହସ
ଉଜ୍ଜ୍ୱଳତା ଘାସର, ବିହ୍ୱଳତା ପାଠକର
ଆକାଶରେ ଚନ୍ଦ୍ର ଲଟକିଛି ଅବଶ୍ୟ
ଅଳି କରୁଛି, କୁହତ ଚନ୍ଦ୍ର କେମିତିକା ?
ଚନ୍ଦ୍ର ଠିକ୍ ପ୍ରେମ ପରି
ତୁମ ପରି ସେ ବି ଅନ୍ଧ
କାମନାର ନିର୍ଝର ଏ ମନ
ଯଦି ସୁଖ ପାଏନା, ଯଦି କୋହ ଉଠେ ତୁହାଇକି
ବୀଣା ଝଂକାର ସତେକି,
କୋହ ରୁନ୍ଧେ ତଣ୍ଟି ପାଖ
ସେ ଘାସ ଅରାକ
ଅନବରତ ଲଟେଇ ଚାଲିଥାଏ
କେବେ ହୁଏତ କାମନାର ନିର୍ଝର
ଜଳର ଫୁଆର ହେବ
ତୋ ଛାତିର ଘାସ ଅରାକ ସବୁଜରୁ ସବୁଜ ପାଲଟିଯିବ ।

□

# ବାଟ ଛାଡ଼ ସୁହଟ ନାଗର

କିଏ ପଥରୋଧ କରୁଛି ମୋର
ଘେରି ଠିଆ ହୋଇଯାଉଚି
ଆଗକୁ ବଢ଼ିବାକୁ ଦଉନି ମତେ-

ମହାବିଶ୍ୱର କୌଣସି ଅକଳ୍ପନୀୟ ସତ୍ତା
କହୁଚି, 'ତୁ ହ୍ରସ୍ୱ'-
ତା' ତ ମୁଁ ଜାଣେ, ତଥାପି
ଗଛଟିଏ, ଫୁଲଟିଏ କଥା କହିପାରେ ବୋଲି
ବି ଜାଣେ,

ମୁଁ ଯେତିକି ପାଇଛି
ଯଥେଷ୍ଟ ନିହାତି,
ଆଉ ଏଣିକି ଖୋଜିବି ନାହିଁ ତୁମକୁ ।

କିନ୍ତୁ ତୁମେ ଚାହିଁ ଯଦି
ମୋ କାନି ପକାଇ ଟାଣି ଆଣିବି ତୁମକୁ
ଘୂରାଇବି ଚଉକଡି,
ସେଇଥିପାଇଁ ମୋ ବାଟସାରା
କଣ୍ଟା ଆଉ କାଦୁଅ
ଛାଟି ଦେଇଛ ଚାରିଆଡ଼େ ।
ହେଲା ଏଥର,
ବାଟଛାଡ଼-
ଯିବାକୁ ହବ ଦୂର ବହୁଦୂର
ଗ୍ରହ ଗ୍ରହାନ୍ତର
ତୁମେ ଜାଣିଚ ସବୁ-
ପ୍ଲିଜ୍, ମତେ ବାଟ ଛାଡ଼ ।

ଏକଥା ଭଲକରି ମୁଁ ବୁଝିସାରିଚି ଯେ
ତୁମେ ମତେ ଭଲପାଅ
ତୁମେ ମତେ ଈର୍ଷା କର ।

❑

# ଅଭିମାନୀ ରାଜପୁତ୍ର

ଦୂର ରାସ୍ତାକଡ଼ରେ
ଘାସ ଚରୁଥିଲେ ଗୋରୁ
ତୁମେ ମତେ କାନ୍ଧେଇ ଚାଲିଥିଲ ଭୁଷାବାଲିରେ
ଧଇଁସଇଁ ।

ସନ୍ଧ୍ୟା ଉଙ୍କିମାରୁଚି,
ସତେରେ କ'ଣ ସମ୍ଭାଳିଥାନ୍ତ ମତେ
ମୋର ଓଜନିଆ ବକ୍ଷ ଓ ଜଘନ
ଏଣେ ଦାଉ ସାଧୁଥିଲା ସଂସାରର ଟାଣପଣ ! ମୁଁ ଆଡ଼େଇଦେଲି ।

ଅର୍ଦ୍ଧଶତାବ୍ଦୀ ବୋହିଯାଇଚି ଯା' ଭିତରେ
'ବିରୁପା' ପାଣିରେ, ସହଜରେ,
ଆମେ ଲକ୍ଷ୍ୟ ରଖିନେ ।
ଅଭିମାନୀ ରାଜପୁତ୍ର କିଶୋର
ଅପମାନର ବୋଝ ବୋହି
ଫେରିଗଲା ବେଳେ
ପ୍ରେମିକାଟିଏ ହୁଏତ ଥାଆନ୍ତା କୋଉଠି ତା'ର
କିନ୍ତୁ
ଅନାଇଁ ନାହିଁ ଆଉ କାହାକୁ ତା'ର କଅଁଳ ଅଭିମାନ ।

□

# ପୃଷ୍ଠାଏ ଇତିହାସ

ନିଶୂତି ରାତିରେ, ଖୁବ୍ ଗହୀରରୁ
ଉଠି ଆସେ ଗୋଟେ ଥର୍ଥର ସ୍ୱର
କେବେ କେବେ ବି ଖୁବ୍ ଦମ୍ଭ, ନିର୍ଭର
କେଜାଣି ବ୍ରହ୍ମା, ବିଷ୍ଣୁ କି ଶିବ ପଥର ତଳୁ
'କଲରାଡୋ' ନଦୀଗର୍ଭରୁ
କେଜାଣି ବା ଇତିହାସର ରାଜରାଜୁଡ଼ା ଗନ୍ତାଘରୁ !

କି' ସୁଖଥାଏ ରାଜପରିବାରରେ ?
ବିଶ୍ୱାସ ନାଁ ପ୍ରେମ ? ହୁଏତ କ୍ୱଚିତ ଲୁଚିଥାଏ,
ନହେଲେ ଷଡ଼ଯନ୍ତ୍ର, ହିଂସା, ବିଷପ୍ରୟୋଗ, ଅକାଳମୃତ୍ୟୁ-
ମାତ୍ର ପ୍ରେମର କଅଁଳ ସାବ୍‌ଜା ବୀଜଟି ଯେ
ପତ୍ର ଦୁଇଟିକୁ ଦି'ଫାଳ ଧରି
ମୁଣ୍ଡ ଟେକିବାକୁ ଚହେଁ ।

କୋଉ ଅତଳ ବିତଳରୁ ଉଠିଆସେ ତୀକ୍ଷ୍ଣ ଗୋଟେ
ଶବ୍ଦର ତୀର, ତୁମେ ତାକୁ ଜୀବନର ମହାମୂଲ୍ୟ
ସ୍ନେହ ବୋଲି ବୁଝିପାର ।

ସେଥିରୁ ବି ବିଛୁଡ଼ିପଡ଼େ
କେତେ ଦୀର୍ଘଶ୍ୱାସ, ବୋହିଯାଏ ଲୁହ
ଅନୁଚ୍ଚାରିତ ବେଦନାର ମୁହଁ ।
ଆଲେକ୍‌ଜାଣ୍ଡରଙ୍କ ସୌଧ- କେତେକେଜାଣି ରାଜପ୍ରସାଦ

ତଳକୁ ତଳ ତା'ର-
ସମୁଦ୍ରର ପାଣି ଉପରକୁ ଯେମିତି ନୀଳ ଛଳଛଳ
କେତେ ଆଗ୍ନେୟଗିରି, ମରୁଭୂମି ଗହରୀରୁ ଗହୀର
କିଏ ଦେଖିଚି ଅବତଳ ତା'ର ?

ରାଜା ଛାତ୍ରଶାଳଙ୍କ ପାଳିତ ପାରାଟି
ଉଡ଼ି ଉଡ଼ି ଆସେ ଯୁଦ୍ଧଭୂଇଁରୁ
ପାଦରେ ବନ୍ଧା ଚିଠିଟିଏ ରକ୍ତ ଜର୍ଜର,
ଏଣେ ଛାତିଫାଟି ଦୁଇଫାଳ ହୋଇଯାଏ
ଅନ୍ତେବାସିନୀର ।
ସ୍ୱପ୍ନ କଟାହେଇ ଖଣ୍ଡ ଖଣ୍ଡ-ରକ୍ତ ଛିଂଗଡ଼ି ପଡ଼ିଥାଏ
ଇତିହାସ କାହିଁ ? ସାଧାରଣ ମଣିଷଟିର ?
ବିକ୍ରମାଦିତ୍ୟଙ୍କ ରାଜସଭାର ବିଦ୍ୱଜନଗଣ
ଏ ସମସ୍ତ ଜାଣିଥିଲେ ବି ଛଟପଟାନ୍ତି-
କେଉଁ ଷୋଡ଼ଶୀ ରାଜଜେମାର ଏକାକୀତ୍ୱ
ପଥର ପାଲଟି ଯାଏ ଛାଏଁ ଛାଏଁ-
ଅତୀତ
ବର୍ତ୍ତମାନକୁ, ଭବିଷ୍ୟତକୁ ନିର୍ଦ୍ଦେଶକରେ ସତ,
ମାତ୍ର ଇତିହାସ ଏ ସବୁର ଫେଣ୍ଟାଫେଣ୍ଟି
ଏକ ବାସ୍ତବତା ।

ଗଂଗା, ଯମୁନା, ସରସ୍ୱତୀ, ସିନ୍ଧୁ, ବ୍ରହ୍ମପୁତ୍ର
କେତେ ନଈର ଧାର
ଉଚ୍ଛୁଳୁ ମୁଚ୍ଛୁଳୁ କଥା କହେ-
କେହି ଭଲା ଶୁଣିପାରେ
ଇତିହାସର ସେ ସନ୍ଦିଗ୍ଧ ସ୍ୱର ?



## କହିବି ଏଥର

ପାହାନ୍ତିଆ ତାରା ଧପ୍‌ଧପ୍ ହଉଚି
ଟକ୍ ଟକ୍ ଲାଲ୍,
ଗୀତ ଗାଉଚି କି ଆଉ!
ମୁଁ ଅବଶ୍ୟ ଶୁଣିପାରୁନି
ପତ୍ର ମର୍ମର, ଯେ ବୋଧେ ତାର ଗୀତ ନୁହେଁ-

ଛେଳିଛୁଆପରି ତରତର ଖୁଆଡ଼ରୁ ବାହାରି ପଡ଼ି
କ'ଣ ଖୋଜୁଚି ସେ ?
ପାହାଡ଼ ଉପର
କୋଳି ଗଛର ପତ୍ର ?

ମୁଁ ଯେ ଭୁଲିପାରେନି ତୁମକୁ
ନଈର ଉଚ୍ଛଳ ଗୁଳୁଗୁଳୁ ଢେଉରେ
ତୁମ ମୁହଁ ଦିଶିଯାଏ ମତେ
ତୁମ ଦୂରାଗତ ଚୁମା
ଛୁଇଁ ପାରେନା ମତେ, ସତ
ହେଲେ, ମୁଁ ତାକୁ ଭୋଗିପାରେ ।

କାନ୍ଦଭଳି ଶୁଭିଯାଉଚି କ'ଣ ଗୋଟେ ସ୍ୱର
ଶୁଭିଯାଉଚି ପାଖ ଜଂଗଲର ଗୁମ୍ ନୀରବତା-
ମୁଁ ମନେ ରଖିଚି ନିର୍ଝରର ସ୍ୱପ୍ନ
ଦେଖିପାରୁଚି, ପୋକମାନଙ୍କର
ଫିକା ଦିଶୁଥିବା
ଗୋଡ଼ିଆଗୋଡ଼ି ଖେଳ ।

ମୋ ନିଜର ଲୁହକୁ ଲୁଚେଇ
ତୁମକୁ ଯାହାକିଛି ମୁଁ
କହିବି ଏଥର
ନିଶ୍ଚେ କହବି ।



# କଣ୍ଠଟିଏ ମୋର...

ମୋର କଣ୍ଠଟିଏ ଦରକାର
ସଂଧ୍ୟା ହଉହଉ ମୁଁ ଗୀତ ଗାଇବି-
କୋଇଲି ହଉ କି କପୋତ ହଉ
କଳା ହୁଏ କି ହଳଦିଆ ମାଟିଆ
କିନ୍ତୁ ସକାଳୁ ସକାଳୁ
ମୋର ସ୍ୱରଟିଏ ଦର୍କାର ।

ରାତିରେ ନିଃଶବ୍ଦ, ଚୁପ୍‌ଚାପ୍
ପାହାନ୍ତା ହଉ ନ ହଉଣୁ
କାଉକାଉଆ ଚିର୍ଚିରା
ପ୍ରେମର ସତେକି ଗୋଟିଏ ନୂଆ ଡ଼ାକରା-

ଶୁଣ, ଟିକେ ଶୁଣତ,
ଝୁର୍ ଝୁର୍ ପବନ ସଂଖୁଳୁଚି,
ବ୍ୟାପିଯାଇଚି ସାରା ଆକାଶ,
ନଈ ସୁଅରେ ତା' ଥର୍ଥର ଢେଉ
ଖଳ ଖଳ ଗୀତ-

ଆଉ ମୋ କଣ୍ଠ ଭିତରେ
ଫୁଟି ଆସୁଚି ତୀକ୍ଷ୍ଣ, କଅଁଳ ସ୍ୱର-
ମୁଁ ଗାଇବି, କିଛି କହିବି,
କିଛି ତୁମକଥା, କିଛି ମୋ କଥା ।

□

# ମାଆ ବୋଲି ବୁଝିନିଅ

ତୁମେ ମାରି ଦେଇ ପାରିବନାହିଁ ସେ ଶବ୍ଦକୁ
ବୟସ୍କା ମାଆର ଅଲ୍ୟଳ କୋଳକୁ
ତୁମେ ଚୀରିଦେଇ ପାର ଛୁରୀରେ
ଗଛର କଅଁଳ ଡାଳକୁ ଛେଦିପକାଇ ପାର,
ପ୍ରେମପୂର୍ଣ୍ଣ ଆଖିକୁ ଫୁଟାଇ ଦେଇପାର ନିର୍ବିବାଦରେ
ଈର୍ଷାରେ, ହିଂସାରେ
ହେଲେ, ଆଜିପରାଦିନରେ, ତୁମ ଜନ୍ମଦିନରେ
ତୁମେ ଅସ୍ୱୀକାର କରିପାର ମାଆକୁ,
କିନ୍ତୁ 'ମାଆ' ଶବ୍ଦର ନିବିଡ଼ତା, ବ୍ୟାକୁଳତା
ଓ ନିସର୍ଗ ପ୍ରାର୍ଥନାକୁ ବଂଦୀକରି ପାରିବ ନାହିଁ କେବେ-
ପର୍ଶୁରାମଙ୍କ ଭଳି କାଳକାଳ
ଇତିହାସର, ପୁରାଣର ଅନ୍ଧାରୀ ଅକ୍ଷରରେ
ଧିକ୍‌କାର ଭିତରେ, ତୁମେ ଭଲପାଇବ ରହିବାକୁ ?

ବାହାରର ଚ୍ୟକଚକ୍ୟ ଭିତରେ ଯଦି କୋଉଠି
ଲୁହ ବୁନ୍ଦାଏ ନିଗିଡ଼ି ପଡ଼େ
ଛାତି ଭିତରେ ଜ୍ୱଳଜ୍ୱଳ ଥାଏ
ସେ ବୁନ୍ଦାଟି ମାଆର ବୋଲି
ବୁଝିନିଅ ।

□

# ପର୍ବତ ଉପରେ

ପର୍ବତ ଉପରେ ଛେଳି  ଚରାଳି
ବଣୁଆ ଆମ୍ବ ଦରପାଚିଲା
ଆମେ ସେଠିକୁ ଯିବା
ଥରେ ଯାଇ ଥିଲେ ବହୁଦିନ ତଳେ-
ସବୁଆଡ଼ ଶାଗୁଆ
ମୟୂର ପଙ୍ଖ ଖୋଲି ନାଚୁଥିଲା
ତା' ବାଡ଼ ଭିତରେ,
ତାକୁ କାଟୁ ନଥିଲା ବନ୍ଧନ ବୋଧେ-
ଦିନବେଳା ହିଁ ତ ଯିବାକୁ ହେବ ସେଆଡ଼େ ।

ସନ୍ଧ୍ୟା ବଢ଼ିଲେ ଖସିପଡ଼ିବ ଜହ୍ନ
ତା'ର ତିଥି ନଥାଏ
ନଥାଏ ବି ଜହ୍ନ ହୁଏତ,
କଳା ବଉଦ ତଳେ ମୁହଁ ଛୁପା ଦେଇଥାଏ ।

ଆମେ ବା କେଇଦିନ !
ସେ ଯେ ଅଜର,
ଆକାଶ ସାରା ନୀଳ ଜଳଧାର-
ଜଳଧାର ମାତ୍ରେ ହିଁ ଧରିରଖେ
ସୂର୍ଯ୍ୟ ଚନ୍ଦ୍ରଙ୍କୁ
ସୂର୍ଯ୍ୟ ଝଲମଲ
ଚନ୍ଦ୍ର ମଧୁର,
ସମୁଦ୍ର ପାଣିସାରା ରାତିବେଳା ତା'ର ପହଁରା
ଭାଙ୍ଗୁଥାଏ ଖଣ୍ଡ ଖଣ୍ଡ
ଉପକୂଳରୁ ଗୋଲ୍‌ହୋଇ ପ୍ରାୟ ଦିଶେନା
ସେଠି ତ ଜଳ ହୁଏନା ନିସ୍ତରଙ୍ଗ,

ଆମେ ଦେଖୁ କେତେ ରୂପରେ ତାକୁ
ଆକାଶରେ ପ୍ରକାରେ ତ ସମୁଦ୍ରରେ ପ୍ରକାରେ
ପ୍ରିୟ ମଣିଷର ମୁହଁରେ, ଆଖିରେ
ଆଉ ପ୍ରକାରେ ।

□

# ପିଲାଦିନ

ଝିଅଙ୍କର ଗୋଟେ ପିଲାଦିନ କଅଣ ?
କୈଶୋର ଯୌବନ ଏକାଠି ଆସେ
ହଜିଯାଏ, ବାରି ହୁଏନା ତା'ର ସନ୍ଧିକ୍ଷଣ ।
ପିଲାଦିନେ କଉଡ଼ି ଖେଳ, କଟ ଖେଳ
ନହେଲେ, ବୋହୂବୋହୂକା ଧୂଳିଘର
କାନମୂଳେ ରିବନ୍ ଭିଡ଼ା ବଉଳମାଳ, ରାଜଦୋଳି, ପୁଚିଖେଳ
ଗୋଟିଏ ତ କୁଆଁର ପୁନେଇ ଜହ୍ନ ।
କବାଟ କଣରେ ଚାନ୍ଦ ଖାଇବାକୁ ଡରବର
ନ ହେଲେ ଯେ ମିଳିବ ବୁଢ଼ାବର ।

କେବେ କଂକି ପଛରେ ଧାଇଁବା
"କଂକି ଧରଣ ମାଆ ମରଣ" ଚେତାବନୀକୁ
ଖାତିର୍ ନ କରବା ।
ସେ ତ ମୋଟେ ଆଠ ନଅବର୍ଷ ବୟସର କଥା
ଆଈ କୋଳରେ ପଶି ଭୂତ ଗପ ଶୁଣିବା
ଅନ୍ଧାରକୁ ନ ଚାହିଁବା, ଡରିବା,
ଏଇ ତ ଖାଲି ହବା ଉଛନ୍ନ, ପିଲାଦିନ ।

ସ୍କୁଲ ଫେରନ୍ତା, ବସ୍ତାନି ଧରି ମୁଗଛୁଇଁ ତୋଳିବା
ସନ୍ଧ୍ୟା ଆଗରୁ ଅନ୍ଧାରକୁ ଡ଼ରି
ଘରେ ପଶିବା ।
ଯଦି କେବେ ତାରା ପରି ଫୁଟିଲା ମନକୋଣରେ
କେଉଁ କିଶୋରଟିର ଆଖି,
ଛଟପଟ ହେବା, ଲୁଚାଇ ଦେବାକୁ ଲାଗିପଡ଼ିବା ।

ଏଇଆତ ଓଡ଼ିଶା ମୁଲକରେ ଥିଲା
ଝିଅଙ୍କ ପିଲାଦିନ,
ଏବେ ବଦଳିଗଲାଣି ଭିନ୍ନ ଭିନ୍ନ,
କେବେ ଉଜ୍ୱଳ ଝକ୍ ଝକ୍ ତ
କେବେ ବିପଦର ଶକୁନ ।

□

# ଦରକାର ନଥିଲା

ମୋର ସବୁଜ ଫଳଟି ଦରକାର ଥିଲା
ସ୍ଫଟିକ ପରି ବୁନ୍ଦାଏ କାକର ତା' ଉପରେ
ମିଳିଲା ନାହିଁ...

ଅପରାହ୍ଣରେ ବଗଟିଏ ଉଡୁଥିଲା
ଭୁଲିଯାଇଥିଲା କି ଘର ତା'ର ?
ପଦ୍ମର ଆଖି ମୁଦି ଆସୁଥିଲା
ନାଲି, ଧଳା ସିଲ୍‌କ ଜାମା ତଳେ
ତୁମ ବର୍ତ୍ତୁଳ ଛାତିରୁ ଦୀର୍ଘଶ୍ୱାସ,
ଫୁଲଚୁଇଁର ବେଳା ଗଡ଼ିଗଲାଣି କେତେବେଳୁ ।

ଚାରି ଜଣ ଆଡ଼ପାଗଳ ଗୁଣୁଗୁଣୋଉଛନ୍ତି
ତୁମେ ତୁମ ବାହା ଓଢ଼ଣୀକୁ
ପୋଖରୀରେ ବୁଡ଼ାଇଦେଲ
ଗଲା କାଲି,
ରଙ୍ଗ ବୋହିଗଲା ଅବର୍ଜ୍ୟା ଦିଶିଲା
ଫିଙ୍ଗିଦିଅ ସେ ଓଢ଼ଣୀକୁ ଏଥର,
ଦର୍କାର ନାହିଁ ।

କିଏ ଜାଣେ, ଓଢ଼ଣୀ ଧୋଇଗଲେ
ତୁମର ମୋର, ଫିକାରଙ୍ଗର ମନ
ସହ ବନ୍ଧନ ବି ଛିଡ଼ିଯାଇପାରେ ।

□

# ମଂଜିମାନେ ଯେମିତି...

ମୋ ଝର୍କା ବାହାରେ ସେଦିନ
ଗୋଟେ ଚଢ଼େଇ ରାବ
ଚିଆଁ ଆସିଲା କୁଆଡୁ
ଏ ଖରାରେ ?
ଅବଶ୍ୟ ମାଆ ତାର ଲକ୍ଷ୍ୟ କରିନି
ଯେ ଋତୁବଦଳ ।
ବର୍ଷା ଅସୁଚି ଆସୁଚି ହେଇ, ଆସୁନି-
ବିଚରାଟି ଚିଆଁ ଫୁଟାଇଛି-
ଗଛ ଡ଼ାଳରେ ବେଙ୍ଗ ଡ଼େଇଁ ଚାଲିଚି-
କୁଆବି,
ଛୁଆର କେତେ ବିପଦ-
ମାଆ ଏଡ଼ାଳ ସେ ଡ଼ାଳ ହଉଚି ଧାଉଁଚି-
କଳା, ମୋଟା ଡ଼ାଳ
...ପ୍ଲିଜ୍ ମୋ ଛୁଆକୁ ଛାଡ଼ିଦିଅ
ଆଉ ଦି' ଦିନ-
ଘନ ବଉଦ କଅଁଳେଇ ଲଦି ଆସିଲାଣି-
ଆଉ ଶୋଷ ନଥିବ-ତାତି ନଥିବ-
ଆମେ ରହିଯିବା,
ଠିକଣା, ବେଳ ଦେଖି ଉଡ଼ିଯିବା-
ମଂଜି ମାନେ ଯେମିତି ଟାକିଥାନ୍ତି, ଗଛହେବେ-
ଯେ ଚିଆଁ ବି ସେମିତି,
ତା' ମାଆ ବି ସେମିତି, ଠିକ୍ ।

□

# ମାଟି ଗୋଡ଼ିର ରାସ୍ତା

ଅଧା ଜହ୍ନ, କାଳି ଅନ୍ଧାର ଭିତରେ
କେଡ଼େ ସୁନ୍ଦର ଦିଶୁଥିଲ ତୁମେ !
ଅଥଚ, ଛଟପଟ ପୋକଟିଏ ପରି
ମୁଁ ଫିଙ୍ଗିଦେଲି ତୁମକୁ ।

ପବନରେ ଫର୍‌ଫର୍ ତୁମ କେଶ-
ନିଜ ଦୁଃଖ, ଅପମାନକୁ ପକେଟ୍‌ରେ ପୂରେଇ
ଫେରିଗଲ ।
ଲାଲ୍ ପଡ଼ିଯାଇଥିଲା ତୁମ ମୁହଁ,
ଟୁକୁରା ଟୁକୁରା ତୁମ ଗଦ୍ ଗଦ୍ ହୃଦୟ ।

ପ୍ରେମିକା ତୁମର ଯେ ତୁମକୁ ବୁଝିଲା ନାହିଁ
ଆକାଶ ଆଡ଼କୁ ଉଡ଼ିଗଲା
ସତେ କି ପରୀ-
କିନ୍ତୁ ମଣିଷ ପାଇଁ ତ ଥାଏ
ମାଟି ଗୋଡ଼ିର ରାସ୍ତା
ତୁମେ ବୁଝିଥିଲ ଏ କଥା ।
ସେ କିନ୍ତୁ ବୁଝିପାରି ନଥିଲା
ମାଟି ଗୋଡ଼ିର ରାସ୍ତାରେ ତୁମେ ଆଗେଇ ଗଲ ।
ସେ ଏଇନେ ପଛରେ କେତେ ପଛରେ ॥

☐

## ଯେ ଘର

ବୀଣା ଝଂକାର
ବେଳେବେଳେ ଲୁହ ଫୁଟାଏ
କୋହ, ରୁନ୍ଧି ଦିଏ ତଣ୍ଟିପାଖ,
ରାବୁଛନ୍ତି କପୋତ କେତେଟା
ଡାକୁଛନ୍ତି ଯାହାକୁ, ଆମେ ସମସ୍ତେ ଜାଣୁ
ତଥାପି, ତୁନିକରି ପାରୁନା ତାଙ୍କୁ ।

ବଳଦ ଦୁଇଟା ଚରୁଥିଲେ
ଏଣେ ତେଣେ ଚାହିଁ ଚାହିଁ
ସେମାନେ ମୁକ୍ତ
ଏକୁଟିଆ ପଣକୁ ପାକୁଳି କରି କରି
ସେମାନେ ବେଶ୍ ଖୁସି ଖୁସି ଲାଗୁଥିଲେ ତ !

ଚଢ଼େଇର ଚଂଚଳ ଆଖିପରି
ସେମାନଙ୍କ ବାଙ୍କ ଚାହାଣୀ-

ଏ ଘର ସେଘର ପଶି
ବାହାରି ଯାଏ ହାଉଯାଉ ପବନ-
ମଜଭୁତ ଝର୍କା କବାଟ ନାହିଁ
ତଥାପି, ଭଲ ଲାଗେ ତ ଯେ ଘର ।



# ଯେ ପୃଥ୍ୱୀ ତୋର

ଅହରହ ଘଣ୍ଟି ବାଜୁଚି
ଧୀର ସ୍ୱରରେ ଅବଶ୍ୟ
କିଏ ଯେମିତି ନିବେଦନ କରୁଚି
ଭାଙ୍ଗିପଡ଼୍‌ନା-ଯାହା ଲେଉଟି ଯାଇଛି
ଆଉ ଫେରିବ ନାହିଁ-ଯାହା ଅଛି ତାକୁ
ଜାକି ଧର୍ ଛାତିରେ ।

ଏଠି କେହି ନାହିଁ ବୋଲି ଭାବ୍‌ନା
ବଉଦକୁ ଚିରି ଜହ୍ନ ଚାହିଁଚି ଦେଖ୍
ଯେ ଆଉ କିଛି ନୁହେଁ...
ଡେଣା କମ୍ପାଉଥିବା ମହୁମାଛି ଦଳଟେ ଅବା
ନାନା କିଚିରି ମିଚିରି
ବଞ୍ଚି ରହିବାର, ବଢ଼ିଯିବାର ନୂଆଗୀତ-
ପ୍ରେମ ପରି ବେପ୍‌ରୱା
ତୁ ଚିହ୍ନିରଖ୍, ଭୟ କର୍‌ନା ।

ଅଧରାତିର ଦୂର ଆଲୁଅ
କନ୍ଦେଇବାର ସ୍ୱପ୍ନ ଆଣି ଦଉଚି
ନୂଆ ନୂଆ ଉଦ୍ଭାବିତ ଯନ୍ତ୍ରର ସ୍ୱପ୍ନ,
କାହା କାନ୍ଦ ଶୁଭୁଚି କି ?

ତୁ ତାକୁ ତୁନି କରିଦେ'-
ଏ ସମୟ ତୋ'ର
ହଉ ପଛେ ଦିନେ ଘଡ଼ିଏ, ପାଞ୍ଚଦିନ
ତୁ' ତ ଏଠି ସାମ୍ରାଜ୍ଞୀ
ଧୂଳି ଉଡ଼ିବ, ଧୂଆଁ ଛୁଟିବ
ପାଗଳର ଅଟ୍ଟହାସରେ ଥରିବ ଏ ମେଦିନୀ
ତଥାପି ତୁ ହିଁ ଏସବୁକୁ
ପ୍ରତିହତ କରିବୁ ।

ତୋ ବୀଜ ଭିତରେ
ମହୀରୁହ,
ବିଷାଦର ଆନନ୍ଦ, ଆନନ୍ଦର ଆନନ୍ଦଠାରୁ
ମଧୁରତର ।
ତୁ ଜାଣୁ ତ,
କବିତାର ଯେ ଇନ୍ଦ୍ରଜାଲ ତୋ'ର
ଏ ସମୟ ତୋ'ର
ଏ ଜୀବନ ତୋ'ର
ଏ ପୃଥ୍ୱୀ ତୋ'ର ।

□

# ଖିଅ ଯୋଡ଼ିବା

କେତେ ଝଲମଲ, ସବୁଜ ସ୍ପନ୍ଦନର ସୂତାଗୁଡ଼ିକ
ମୋ ଚାରିକଡ଼ରେ ଲମ୍ବିଗଲେ
ମତେ ଛୁଇଁବେ ଛୁଇଁବେ ହେଲେ
ମୁଁ କିନ୍ତୁ ଆଙ୍ଗୁଠି ବଢ଼ାଇଲି ନାହିଁ ।

ସେ ସବୁ ଦୂରକୁ ଦୂରକୁ
ଉହୁଁକି ଚାଲିଗଲେ
ମୁଁ ହତଭମ୍ବ, ଭାବି ବି ପାରିଲିନାହିଁ
ଖିଅ ଯୋଡ଼ିବା କେତେ ସହଜ
ମତେ ପଶ୍ଚାତାପର ମୂର୍ଖତା ଆଙ୍ଗୁଳାଏ
ହବାର ଥିଲା,
ଚୁପ୍‌ଚାପ୍ ଲୁହ ପିଇ ଯିବାର ଥିଲା ।

ଖିଅ ଯୋଡ଼ିବା ସହଜ ଯେତିକି
ପ୍ରାଣ ଘାତକ ସେତିକି,
ଗଲା ଜନ୍ମର କରୁଣ ସ୍ମୃତି-ଜଡ଼ିତ କି ସେ ସବୁ!
ସେ ସୁନ୍ଦର ମୁହଁ ସବୁ
ଗୋଲାପି ନାସାରନ୍ଧ୍ର
ଆତ୍ମୀୟସ୍ୱର,
ଛାତିରେ ଧକ୍କା ମାରୁଚି କୋହ, ହାହାକାର ।
ସେ ସ୍ୱହାଣୀରେ ଉଛୁଳୁ ଥିଲାଭାବ, ମୋର, ମୋର
ମତେ ଗ୍ରହଣକର ।

ତାର ବହୁତ ପୂର୍ବରୁ ମୁଁ ସ୍ୱପ୍ନ ଉପରେ
ଅଜାଡ଼ି ଦେଇଥିଲି ଅହଂକାର
କଂସ୍ର ଆମ୍ବରଂଗର ଗାଲିସ୍ର ଉପରେ
ଅଜାଡ଼ି ଦେଇଥିଲି ବାଲି
ଚିହ୍ନି ପାରିଲି ନାହିଁ
କିଏ ଗୋଟାପଣେ ମୋର !

□

# ଶବ୍ଦର ମୁହଁ

ଏତେ ବଡ଼ ଆଇନା
ତଥାପି ଦେଖିହଉନି ନିଜକୁ
ରହିଯାଉଚି କେତେ କେଜାଣି ଅଦେଖା ।

ମୁଁ ତ ଆଉ ପିଲା ନୁହେଁ, କିଶୋରୀ ନୁହେଁ
ଚେହେରା ଦେଖି ନାଚିଯିବି
ବାଃ କି ସୁନ୍ଦର ମୁଁ!
ଖୋଜିବି ତୁମକୁ ।

କୋଉଦିନୁ ଭୁଲିସାରିଚି
ଜୁଳୁଜୁଳିଆ ପୋକର
ଅବାନ୍ତରତାକୁ
ଅଥଚ, ଆଜି ବି ତା'ର ମେଳା
କ'ଣ କମ୍ ସୁନ୍ଦର !

ନିଜ ଅଭ୍ୟନ୍ତରର ବୃଥା ଅହମିକା
ଯାହା ଦୂରେଇ ନେଲା ମତେ
ମୋ ନିଜ ମଣିଷଠୁଁ-
ଶବ୍ଦ ଗଢ଼ିବାରେ, ଖଞ୍ଜିବାରେ
ଯୋଉ ଉଲ୍ଲାସ, ତାକୁ କିନ୍ତୁ
ଛଡ଼େଇ ନେଇପାରିନି କେହି
ମୋର ମୂର୍ଖତାର କୋଳରୁ ।

☐

# ବିବାହ : ସେଦିନ ଓ ଆଜି

ଜାଂଗୁଲୁ ଜାଂଗୁଲୁ ରାତି
ସେ ସ୍ନାନକୁ ଯାଆନ୍ତି
ସେ ଦିନ ବାହୁଡ଼ି ଆସିଲେ ତଡ଼ତି
ସଙ୍ଗ ଇଛିଲେ-କିପରି ବା ମୁଁ ଜାଣନ୍ତି
ମଝିରେ ମୁଁ ଅନୁଭବିଲି ଭିନ୍ନତା
ସେତେବେଳକୁ ପ୍ରଜ୍ଜ୍ୱଳିତ ସେ କ୍ରୋଧରେ
ପଳାୟନ କଲେ ଛଦ୍ମବେଶୀ ଦେବତା ।

ମୋର ଲକ୍ଷେ କ୍ଷମାପ୍ରାର୍ଥନା
ମହର୍ଷିଙ୍କ କ୍ରୋଧାଗ୍ନିରେ ଭସ୍ମୀଭୂତ ହେଲେ
ମୁଁ ପାଲଟିଗଲି ପଥର, ଅଭିଶାପରେ ।

ଆଉ ସ୍ୱୟଂବରରେ ପଣରଖି ଜିତିଥିବା
ସେ ରାଜପୁତ୍ର କ'ଣ ବା ନ କଲେ !
ଜଳନ୍ତା ନିଆଁରେ ପାଦରଖି ଚାଲିଲି
ବାହାରିଲି ସୁବର୍ଣ୍ଣ ତେଜରେ
ନିରୁପାୟ ପ୍ରିୟମୋର
ମୋତେ ଗ୍ରହଣ କଲେ
କେଜାଣି ଦୟାବଶରେ !
ଅଥଚ ସନ୍ତାନ-ସଂଭବା କାଳେ
ମୋତେ ବିସର୍ଜି ଦେଲେ ଅରଣ୍ୟ ସୀମାରେ ।

ଏଇ ତ ବିବାହ, ସ୍ୱୟଂବର, ଗାନ୍ଧର୍ବ
ଯାହାର ପ୍ରମାଣ ଲୋଡାହେଲା ରାଜସଭାରେ ।
ଅସାବଧାନତା ବଶତଃ ହଜିଯାଇଥିବା ମୁଦ୍ରିକା
ନ ମିଳିଲେ
ଅସ୍ୱୀକୃତ ମୋର ପ୍ରେମ, ମୋର ପୁତ୍ରଜନ୍ମ ।

ମୋର ଅରଣ୍ୟ-ଆଶ୍ରମ
ଏଇ ଗାନ୍ଧର୍ବ ରୀତି !
ରାଜା ପୁଣି କହିଥିଲେ, "କା' ତ୍ୱଂ କସ୍ୟାସି ସୁଶ୍ରୋଣୀ
କିମର୍ଥ ଚାଗତା ବନଂ-ଏବଂ ରୂପଗୁଣପେତୋ-ଇତ୍ୟୁବାଚ
ମହୀପତି ।"
('ଅଭିଜ୍ଞାନ ଶାକୁନ୍ତଳମ୍'- କବି କାଳିଦାସ)

କାମ ବିହ୍ୱଳତା ଏ କ'ଣ ନୁହେଁ, ନିଷ୍ଠୁର ରାଜ ପରିବାରର ?
ଏଇତ ବିବାହ, ଏଇତ ସମ୍ମାନ ବିବାହିତାର

ପଞ୍ଚପତିଙ୍କ ସମ୍ମୁଖରେ କେଉଁ ନ୍ୟାୟରେ
କ୍ରୀତଦାସୀ ପାଲଟି
ବିବସ୍ତ୍ର ହେବାରୁ ରକ୍ଷାପାଇଥିଲେ ପାଞ୍ଚାଳୀ-
ଊର୍ଦ୍ଧ୍ୱମୁଖୀ, ଦୁଇହାତ ଟେକି ?

ଆଉ ଆଜି, ନାରୀ ଯଦି ଖୋଜିବସେ
ତା'ର ସ୍ୱାଭିମାନ, ସ୍ୱାଧିକାର
ଦେବାକୁ ହେବ ତୁମକୁ ।
ଦି'ଦିନର ଦିଆନିଆ ଯେ ନୁହେଁ
ନାରୀ ଆଜି ନିଜେ ବି ପାଲଟି ଯାଇଚି ନିଷ୍ଠୁର-

ସେ ପତ୍ନୀ ନୁହେଁ, ମାତା ନୁହେଁ
ସେ କେବଳ ଏକ ବ୍ୟକ୍ତିତ୍ୱ
ସ୍ନେହଶୀଳ, ତ୍ୟାଗମୟ ସେ ସତ,
କିନ୍ତୁ ତୁମେ ଯଦି ତାକୁ ସମ୍ମାନ କର,
ସ୍ୱୀକାର କର ।

□

## ଏଇ ବଗିଚ୍ଛ

ଉପନ୍ୟାସର
ପବନରେ ଉଡ଼ିଯାଉଥିବା
ଅବିନ୍ୟସ୍ତ ପୃଷ୍ଠାଗୁଡ଼ିକ ପରି
ଆଗ,ପଛ, ତା' ପରକୁ ମଝି-
ହେଲେ, ଆମେ ଭାବିଚେ
ଆମେ ଦୁହେଁ ସବୁଆଡ଼େ ଏକାଠି-
କେମିତି ପବନରେ ଝୁଲିଲା ଆମର ଆଗମ
ସ୍ୱାଗତ ଚିହ୍ନଭଳି
ଝଳିଲା ଅନ୍ଧାରରେ
କାଦୁଅ ପାଣିଧାର ଭିତରେ ।

ମୋର ଉଲ୍‌ପରି ନରମ ଦିହକୁ
ମୁଁ ଅଲଗା କଲି ।
ଯାଉଚି କୁଆଡ଼େ
ମୁଁ ଜାଣିନି, କିନ୍ତୁ
ତାରାଲୋକରେ ଚକ୍‌ଚକ୍ ଗଛତଳେ ଯାଉଚି
ସେ ଗଛମାନେ ଗୀତ ଗୁଣୁଗୁଣଉଛନ୍ତି ।
ହେଲେ, ତୁମେ ରହ ଟିକେ
ମୟୂରର ପେଟପରି ତୁମ ସାବ୍‌ଜା ତଳିପେଟରେ ମୁଁ
ମୁହଁ ଘଷେଁ ।

ଶରତ୍ ଓ ଶୀତରେ
ଆମେ ନିଆଁ ଜାଳେଁ,
ରୁଦ୍ରାକ୍ଷ ଜପାମାଳିପରି
ତୁମ ମେରୁଦଣ୍ଡରେ
ହାତ ଚଳାଏଁ, ତା'ପରେ ଗୀତଗାଏଁ ।

କାଦୁଅ ସଣସଣ, ଚଢ଼େଇମଳ ଭଣଭଣ
ଆଉ ମେଞ୍ଚାଏ ପୋକ ଏଠି-
ତୁମେ ଗ୍ଲୋବ୍ ପିନ୍ଧି
ଆଡ଼େଇ ଦିଅ ତ ସେମାନଙ୍କୁ
ମୁଁ ଗୀତ ଗାଇବି
ନୂଆ, କଅଁଳ ଘାସର ଗୀତ ।

ଏ ସନ୍ତସନ୍ତିଆ, ବିପଜ୍ଜନକ ବଗିଚାରେ
ମତେ ଆଉ ମୁହୂର୍ତ୍ତେ ଧରିବାକୁ ଦିଅ ତୁମକୁ,
ମୋର ଏଇ ମରଣଶୀଳ ହାତରେ,
ଧରେଁ, ଝୁଲାଏଁ
ତୁମ ଓଠକୁ ମୋ ଓଠରେ ଖୋଲେଁ
ଗୀତ ଗାଏଁ ।

□

# ଅନ୍ଧ ଶିକାରୀ ନୁହଁ

ପ୍ରେମପରି
'ମୃତ୍ୟୁ ବି କ'ଣ ଅନ୍ଧଶିକାରୀ ?
ନହେଲେ, କବିତା କାନ୍ଦେ କାହିଁକି ?
ତା' ପାଇଁ ତ ସାରା ଶୂନ୍ୟମଣ୍ଡଳ ରହିଛି-
ସେ ଘୂରି ପାରନ୍ତା ଅନାୟାସରେ
ପବନରେ ଉଡ଼ିବୁଲୁଚି କାହିଁକି ?

କାଠହଣାର ଜୋର୍ ଠକ୍ ଠକ୍‌ରେ
ଚମକି ଉଠୁଚି ଗୁଣ୍ଡୁଚି
ମହୁମାଛି ଡ଼େଣା ହଲେଇ ଗୀତ ଫୁଟଉଚି
ଏଠି ନାଁ ଅଛି ଅଂଗୁର ବଗିଚା
ନାଁ ଗୋଲାପ ବଗିଚା
କାଁ ଭାଁ ଗଙ୍ଗଶିଉଳି, ତା' ମୂଳରେ
ତୁମେ ଯଦି ଇଚ୍ଛା କରନ୍ତ
ମୋ ଶବକୁ ପୋତିଦିଅନ୍ତ
ନ ହେଲେ ଇଲେକ୍‌ଟ୍ରିକ୍ କି ଗ୍ୟାସ୍ ଚୁଲା ।

ଜାଣେ, ମୋ ପାଖକୁ ସେ ଆସିବେ
ତାଙ୍କ ଦେଉଳ ଗଂଭୀରୀ ଛାଡ଼ି-
ସେ ଜାଣନ୍ତି ମୋ ଅଭିମାନ
ମରିଗଲେ ବି ତୁଟିଯିବନି ତାହା
କିଏ କାନ୍ଦିବେ କି ନାଁ ଜାଣେନା
କିନ୍ତୁ ଲୁହଭର୍ତ୍ତି ହବ ତାଙ୍କରି ଆଖିରେ
ଅଦୃଶ୍ୟରେ ।

ସେ ଜାଣନ୍ତି, ଦୁଃଖ ମୁଁ ଭୋଗିଚି ସତ,
କିନ୍ତୁ ସବୁବେଳେ ହସିଚି ମନେମନେ
ଦୋଷ ଦେଇନାହିଁ ତାଙ୍କୁ
ଏପରିକି, ମୋ ବୋଉର ଯନ୍ତ୍ରଣା ଦାୟକ ମୃତ୍ୟୁପରେ ବି
ତାଙ୍କ ଆଶୀର୍ବାଦ ଲୋଡ଼ିଚି ମୁଁ -
'ଏତେ ଭଲ ନିଷ୍ପତ୍ତି ତୁମର'
ହାତଯୋଡ଼ିଚି ।

☐

## ପ୍ରେମ କେଉଁ ଦେଶ ଫଳ ?

ଭଲ ପାଇବା ଅନ୍ତରର, ଜ୍ଞାନର, ବୁଦ୍ଧିର
ଏକାକୀତ୍ୱର, ଝୁରି ମରିବାର-
ଖାଲି ଦୁଇ ମିନିଟ୍ ବାମ୍ଫ ଖୋଲିଦବା
କ'ଣ ଭଲପାଇବା ?

ମସ୍ତିଷ୍କର ଅଣୁ ପରମାଣୁ
ପ୍ରେମରେ ଟହଟହ ।
ଅଥଚ, ବଡ଼ କବିମାନେ କହିଲେ
'ପ୍ରେମ କ'ଣ ଏତେ ସରଳ, ସହଜ ?
'ପ୍ରେମ ପ୍ରେମ' ହେଲା ବୋକାଲୋକଙ୍କ କାମ ।

ସାରା ପୃଥିବୀର ଯେତେ ପ୍ରେମଗୀତ
ଯେତେ କରୁଣ ବିହ୍ୱଳ ସ୍ୱର
ମାତ୍ର କେଇ ଦିନର ।
ସବୁଜ ପାଲଟି ଯାଏ ଧୂସର ।
'ରକତ ଟଳମଳ, ଖଇର ପାଙ୍ଗପଳ'ର
ଯେଉଁ ଫଳ, ସେ ଅସମର୍ଥ, ଅପ୍ରାପ୍ୟ
କଦାପି ନୁହ ସରଳ ।

ଆମେ ଛଟପଟ ହଉ ଯେ
କିଏ ବା କାହାକୁ ବୁଝିପାରେ ଏଥିରେ !
ଯେତେବେଳେ ବି ଯେଉଁ ପୁରୁଷ ନାରୀ
ହୋଇଗଲେ ଏକାଠି,
ଦେହ ମନ ମିଶେଇ ଦେଲେ
ପ୍ରେମ କାହିଁ ? ୟେ ପ୍ରକୃତିର ଚାଲ୍-
ଆଜୀବନ ଗୁରୁଗୁରୁ ପୋଡ଼ିବାରେ
ପ୍ରେମ ଥିଲେ ଥାଇପାରେ ।

ଯେମିତି ସେଦିନ
ତୁମେ ଆଉ ମୁଁ ହାତଛନ୍ଦି
ବସିଥିଲେ ଉପକୂଳରେ
ଜହ୍ନ ପହଁରି ଆସୁଥିଲେ ବି
ତତ୍କ୍ଷଣାତ୍ ଉଭାନ୍ ହୋଇଗଲା ପ୍ରେମ-
ସାମୁଦ୍ରିକ ପକ୍ଷୀ ପାଲଟି ଦୁଇ ଦିଗକୁ
ଉଡ଼ିଗଲେ ଆମେ ଦି'ଜଣ ।

ପ୍ରେମ ନିଶ୍ଚେ ପ୍ରକୃତିର ଗୋଟେ ଚାଲ୍
ଅଦୃଶ୍ୟ, ଲୁପ୍ତ ସ୍ମୃତିର ଏକ
ମୁହୁର୍ମୁହୁଃ ଅବତାରଣା-
ଅଧରା, ଅପହଞ୍ଚ କେବଳ ।

☐

## ବାପାଙ୍କ କଥା

କୋଉ ପିଲାକାଳରୁ ହଜେଇ ଦେଇଚି ତୁମକୁ
ତୁମେ ଛାଡ଼ି ଯାଇଚ ମତେ ଗାଁରେ
କ'ଣ ଏମିତି ଆକର୍ଷଣ ଯେ, ବାପା,
ପିଲାଙ୍କଠୁଁ ଶହେ ଯୋଜନ ଦୂରରେ
ବର୍ଷ ବର୍ଷ ବିତିଚାଲିଗଲା ?

ଗଛ ଉପରେ ନଡ଼ିଆଗଛ ମଥାନରେ
ପ୍ରଥମ ତାରା ଉଏଁ
ତା'ପରେ ଉଙ୍କିମାରନ୍ତି ଆଉ ଗୋଟି ଗୋଟି
ଲଣ୍ଠନଜଳେ, ମଶାରି ଭିତରେ ଲଣ୍ଠନ ଥୋଇ
ମୁଁ ପାଠପଢେ ।

ବୋଉ ଆଖିରୁ ଝରେ ଲୁହ ନା ରକ୍ତ ?
କିଏ ଜାଣେ ?
ସେ ତ ଲୁଚେଇ ପୋଛିପକାଏ ।
ଏବେ ତୁମେ ଫେରିଲ ଯେ
ବିତି ଗଲାଣି ତିରିଶବର୍ଷ-ମୁଁ ପିଲାଙ୍କ ମାଆ
ସ୍ୱାମୀର ସ୍ତ୍ରୀ- ତଥାପି କୋଳେଇନେଲି ତୁମକୁ ।

ବଡ଼ଭାଇ, ଭାଉଜ, ବୋଉ, ନାନୀ
ଘେରିଗଲେ ତୁମକୁ
ରଙ୍କ ରତନ କି ତୁମେ ?
ଆଉ ବେଳ କାହିଁ ବାପା ?
ତୁମକୁ ଦେଖିବାକୁ, ବୁଝିବାକୁ
ଶିଖିବାକୁ ତୁମ ଜୀବନ-ବେଦ ?
ଛୁଇଁହବ, ତୁମ ଚେତନାର ଦିଗନ୍ତ ?
କହିପାରିବ ସ୍ନେହଦରଦର କଥା ପଦେ ?

ନୀଳ ରତ୍ନରେ ଝକ୍‌ମକ୍ ପ୍ରଜାପତି,
ଲାଲ୍‌ଗୁଡ଼ି, ଆଉ କ'ଣ ଫେରିଆସିବ
ଚେରଛି ଚାହିଁବ
ଗଛରେ ମକା ଖୁଂପୁଥିବା ଶୁଆ- ?

ତଥାପି ତୁମେ କ'ଣ ବୁଝିପାରୁଥିବ
ଆମ ମିନିଟ୍‌କର ଅନ୍ୟ ମନସ୍କତା ?
କେବେ ନୁହେଁ, ତୁମେ ଛାଡ଼ିଯିବ ଆମକୁ ।

ବେଳ ଆଖର
ଆଉ ଅଳ୍ପଦିନେ-
ଆମେ ଖାଲି ଆଉଁସୁଥିବୁ
ତୁମ ପାଉଁଶ ମୁଠାକୁ
ଶୂନ୍ୟ ପାପୁଲିରେ ।

□

## ବିଘଟଣ

ବର୍ଷାବୁଡ଼ା-ପାଚିଲା ଧାନକିଆରୀ
ମଝିରେ ଚାଷୀ-ଛାତି ତାର ଚୀରି ଯାଉଚ୍ଛି-
ସର୍ପ ଘେରିଥିବା ବହଳପତ୍ରର କୁଳାଯ଼ ଭିତରେ
ଉପାସରେ ଥଣ୍ଡ ମେଲିଥିବା ଚଢ଼େଇ ଛୁଆ-
ବାପା ମାଆଙ୍କ ସକଳ ଶ୍ରମ ଓ ସଂପଦ
ଲୁଟିନେଲାପରେ (ଶରୀର ଯେ ଏକ ବିଶାଳ ଆମୃସତ୍ତା,
ତାହା ନବୁଝି) ସେମାନଙ୍କୁ ଦାଣ୍ଡପିଣ୍ଡାକୁ ଠେଲି ଦେଇଥିବା
ପୁଅ ଝିଅ-
ସାଇକେଲ ଚଢ଼ି ନୂଆନୂଆ କଲେଜ ପଢ଼ାଳି ବାଳିକା,
ନିଛାଟିଆ ବେଳ- ଜୀଅନ୍ତା ବାଘଦଳଙ୍କ ହାବୁଡ଼େ ପଡ଼ି
ବିବସ୍ତ୍ର ହେବା-
ଏ ସବୁକୁ ଭୋଗି, କେତେ ଅତୀତ, କେତେ ଭବିଷ୍ୟତକୁ
ଆମେ ଅନାଇଁବା-

ନିର୍ଦ୍ଧନଟି, ପୋକଟେ ପାଦତଳେ ଦଳି ହୋଇଯିବା ପରି
ପ୍ରଚଣ୍ଡ ଜୀଜୀବିଷାରେ ଘୁଷୁରିବା-

ହାତ ମୁଠାରେ ପୃଥ୍ୱୀକୁ ଚାପିଧରିଥିବା ଉଦ୍ଧତ
ଦିନେ ପିମ୍ପୁଡ଼ିର ପାଦତଳେ ମକ୍ଷି ହୋଇ ଯିବ
ଏ କଥାକୁ ଭୁଲିଯିବା-
କାକରଭିଜା ଛନଛନ ଘାସ ଅରାକ ଉପରେ
ଜଳନ୍ତା ଅଂଗାର ପୁଳାଏ ଅଜାଡ଼ି ଦେବା
ଏ ସବୁ କରେ କିଏ ? ସହେ କିଏ ?

ସେହି ହେଉଛି ଜୀବନ
'ଯାହା'
ଆପଣାର ସୌନ୍ଦର୍ଯ୍ୟ ବିଷୟରେ ଅସଚେତନ ।
ଅଥଚ, ଜୀବନ-ଅଗ୍ରଗତିର ଏ୍କେ କି' ପ୍ରକାର
ଗୋପନୀୟତା ?

ଝରଣା ନଈ ଆଡ଼କୁ ଆଗେଇଯିବା
ନଈ ସମୁଦ୍ରରେ ହଜିବା
ସମୁଦ୍ର ଉଲ୍ଲଂଘ ହେବା
ଏ ସବୁତ ଅହରହ ମୁଖର
ହେଲେ
କି' ପ୍ରକାର ପ୍ରକୃତି ଏ୍କେ ମଣିଷର ?

□

## କ'ଣ ଭଲପାଏ, କବି

ସୋରିଷଫୁଲର, ପଦ୍ମଫୁଲର, ଧାନ ଫୁଲର
ରାସ୍ତାଦେଇ ଗଲାବେଳେ
ସେ ସବୁ ଆଉ ଦିଶନ୍ତି ନାହିଁ ।
ଗଛମାନଙ୍କର ଛାଇ ଲମ୍ବି ଯାଉଥାଏ
ଘନେଇ ଆସେ ସନ୍ଧ୍ୟାବେଳ
ଏବେ ଏକା ଫେରିବାକୁ ହେବ ମତେ
ଏଇ ନିର୍ଜନ ରାସ୍ତାରେ,
ଯଦିଓ ଏ ରାସ୍ତା ସେ ଦିନର,
ଆଜିର ରାସ୍ତାଭଳି ନୁହଁ
ବିପଦଶଂକୁଳ ।

ବାପାଙ୍କ ଜଙ୍କ୍‌ଲଗା ବନ୍ଧୁକ
ଓହଳିଥିବ କାନ୍ଥରେ-ସେ'ତ ନାହାନ୍ତି
ଆଖପାଖରେ ।
ବୋଉର ରାତି ଅଧିଆ ନାନାବାୟା ଗୀତର
ନିଦୁଆ ସ୍ୱର ଶୁଭି ଯାଉଥିବ ଦିନେଦିନେ ।

ପ୍ରତି ସକାଳୁ ସଜଫୁଲ, କାକର ଟୋପା
ଚିର୍ ଚିରା ଚଢ଼େଇ ରାବ
ବେଙ୍ଗଙ୍କ ଫକ୍ ଫକ୍ ଡ଼ିଆଁ
ବିଶୁଦ୍ଧ କବିଟିଏ କେମିତି କେଜାଣି
କାଳକଟେ ନୀରବରେ, ଆହ୍ଲାଦରେ
କେଉଁ ହୃଦ୍ୟ ସଂଭାବନାର, କିପ୍ରକାର
ପ୍ରିୟ-ଭାବରେ !

ପୂର୍ବ ରାତିରେ ଲାଗିଲା
ଜହ୍ନ ସତେକି ଓହ୍ଲେଇ ଆସିବ
ବସିଯିବ ସମସ୍ତଙ୍କ ସାଥୀରେ
ସମସ୍ତେ ମନଇଚ୍ଛା ଥୋଇଦେଇ ପାରିବେ ତାକୁ
ଆକାଶରେ-
(ନିଘା ନଥିବ କାହାକୁ ।)

ମୁଁ ଜାଣେ, କବିଟିଏ କାଳକାଟିବା
ବଡ଼ କଠିନ,
ସହିବା ଯେ ପୃଥିବୀର ଦାଉକୁ
ପୁଣି ଆଦରିନେବା ଅବହେଳା,
ନିଷ୍ଠୁର ପଣ, ହେଲେ
ବିଶୁଦ୍ଧ କବିଟିଏ ତ ସବୁଜାଣେ
ସବୁ ସହେ, ସବୁକୁ ବୁଝେ, ଭଲପାଏ ।

□

## ମତେ ଦେଖା କରିବ ତ ?

ଯଦି ଦେଖା କରିବାକୁ ଆସ
ତା' ହେଲେ ସେ ରାସ୍ତାକଡ଼
ଗଛ ମୂଳକୁ ଆସ,
ଛାଇ ଅନ୍ଧାର,
ମୁଁ ଝପ୍‌ଝପ୍ ବର୍ଷାରେ ଓଦାହେଇ
ରିକ୍‌ସା ଚଢ଼ିବି, ତୁମେ ଚିହ୍ନିନବ
ଯେତେ ଲୋକ ଥିଲେ ବି ।

ଯେଝା ଯେଝା ବାଟରେ ସେମାନେ
ତୁମର ଇଚ୍ଛା ଜାବୁଡ଼ି ଧରିବ ମତେ,
ତୁମ ଜୀବନ ସାଥୀକୁ କହିବ,
ଏ ଅଭିସାରରୁ ଯଥାଶୀଘ୍ର ଫେରି ଆସିବ ତୁମେ, ସତକି ?

ସମୁଦ୍ର ଦୂରରେ ଥିବ ଅବଶ୍ୟ
ଶୁଭୁଥିବ ତାର ଘନଘୋର ଘୋଷ ।

ସେଇ ସମୁଦ୍ରରେ ତାରାମାନେ ଝକ୍‌ଝକ୍ ମାରୁଥିବେ
ଜହ୍ନ ତ ଜହ୍ନ, ତା' ଥଣ୍ଡା ପାଣିରେ
ବୁଡ଼ ମାରୁଥିବ ଜହ୍ନ
ସମୟ ଓ ଢେଉ ଗଣୁଥିବେ ପରସ୍ପରକୁ-
ଜଗିବସିଥିବ, ଖଣ୍ଡେ ଦୂରରେ ମୃତ୍ୟୁ ।
ଦେଖ, ଆସିବ ତ ଆସିବ
ଠିକ୍ ସନ୍ଧ୍ୟା ସାତଟାରେ
ସମୁଦ୍ର ଠୁଁ ଅଳ୍ପ ଦୂର
ସେଇ ରାସ୍ତାକଡ଼ ଗଛ ମୂଳକୁ-

ନହେଲେ, ଆଉ କ'ଣ ଦେଖାପାଇବ ମୋର ?
ମୁଁ ଯେ ଚୁପ୍‌ଚାପ୍ ବସି ସାରିଥିବି
ପକ୍ଷୀଟିଏ ହୋଇ ଗଛଡ଼ାଳରେ
ନହେଲେ
ମିଳେଇ ଯାଇଥିବି ଢେଉ ସାଙ୍ଗରେ ।

□

## ନଈ କଥା

ରାତି ପାହୁ ନ ପାହୁଣୁ
କଂପାଉଚି ଅଣ୍ଡାରୁ ଫୁଟି ଛୁଆଟେ-
କି ଜାତିର ଦିଶୁନାହିଁ, ତଥାପି କି କୁହାଟ !
'ମୁଁ ଆସିଲି, ମୁଁ ଆସିଲି ।'

ଏଣେ ଗଛତଳେ ପିମ୍ପୁଡ଼ିଧାର
ମଲା କଂକି
ଘେଟ ଖାଇଥିବା ଗଛ ଡାଳ-
ଆମେ ମଣିଷ ହେଲେ ବି କେଡେ ନିର୍ବିକାର ।

ବାରବୁଲା ବିଲେଇ, କୁକୁର ଛୁଆ
ଭୋକ ଉପାସରେ ଛଟପଟ-
ଆମ ମନରେ ଛିଟାଏ ନାହିଁ ବିକଳ-

ମନେ ପଡନ୍ତି ମୋ ମାଆ ଆଉ ଆଈ
ମୁଠାଏ ଭାତ ଯେମିତି ହେଲେ ରଖିଥିବେ
କୁକୁର ପାଇଁ, ଆଉ ଶୁଖୁଆ, ବିଲେଇ ଛୁଆପାଇଁ ।
ଏବେ ମଣିଷର ଖାଲି କନ୍ଦଳ, କୋଳାହଳ,
ଆମେ ବି ସେଥିରେ ସାମିଲ ନୁହଁ-ତ କ'ଣ ?

ଦୟାମାୟାର ନଦୀ ଧାରଟି ଶୁଖି ଠକ୍ ଠକ୍
ମନତଳେ, ମାଟି ଉପରେ, ଜମି ଉପରେ
ଆଂଜୁଳାଏ ପାଣିନାହିଁ କୋଉଠି,
ରାତି ଅଧରେ ଠକ୍ ଠକ୍ କାନ୍ଦେ ନଈ ।

ମନକୁ ମନ କହେ
ମୁଁ କ'ଣ, ପାହାଡ଼ ଖୋଲରୁ ଡେଇଁପଡ଼ିଥିଲି
ଏଇଥିପାଇଁ ?
ଏଠି ଯେ ଶୁଖିଲା ମାଟି, ଶୋଷ
ୟା' କଣ ଥିଲା, ମୋ ମନ ସଧ ?

□

# ମୁଗଉଡ଼ା ପର୍ବ

ପୋଖରୀ ମଝିରେ
ପଦ୍ମଫୁଲଟିକୁ ଦେଖିଲେ
ତାରା ବି ପାଗଳ ହୋଇଯାଏ ।

ବେଙ୍ଗରଡ଼ି ଆଉ ଶୁଭେନାହିଁ ଆଜିକାଲି
ଝିଲ, ଗାଡ଼ିଆ ତ ନଥାଏ-
କେଜାଣି କେଉଁ ଆଂଜୁଳାଏ ନର୍ଦ୍ଦମା ପାଣିରେ
ମୁଣ୍ଡ ଗୁଂଜିଥିବ ବିଚରା ପାଣିଶିଉଳି ।

ଜହ୍ନ ମନକୁ ମନ ଖେଳେ
କିଏ ଥାଏ ତା' ସାଙ୍ଗରେ ଆଉ ?
ମୁଁ ତ ଅନେଇବାକୁ ବି ସୁବିଧା ପାଏନା ।
ଏଡ଼େ ଏଡ଼େ ଉଚ୍ଚା କୋଠାଘର
ସେ ତା'ର ମନକୁ ମନ ଘୁରିବୁଲେ ଦୁଃଖରେ,
ଶୁଖିଲା ମୁହଁରେ ।

ଏବେ ତ ଚାଷଜମିର ସଂକଟ
ଚାଷୀର ହା' ହୁତାଶ ।
ଆଉ ଆମେ ଯିଏ ପିଲାଦିନେ
ଖେଳୁଥିଲୁ କ୍ଷେତ ଖମାରରେ
ମୁଗଛୁଇଁ ତୋଳି ଫେରୁଥିଲୁ
ଇସ୍କୁଲ ରାସ୍ତାରେ,
ଏଣିକି ବାହୁଡ଼ିବୁ ତ ଦିନେ ନା ଦିନେ ।

ଖଳାବାଡ଼ିର ମୁଗଭଜା, ମୁଗବାଡ଼ିଆ ପର୍ବ
କୋଉଦିନୁ ଉଭାନ୍ ହେଲାଣି ।

ତଥାପି
ଉଡ଼ିଯାଏ ଫୁଲ ଫଳର ଫୁଆରା
ଅତୀତର କଳ୍ପଲୋକରେ ।

□

# କ୍ଷେତ ଖମାର

ଆମ ପିଲାଦିନର କ୍ଷେତଖମାର, ଚାଷଜମି
ଆଉ ନାହିଁ ।
ମୁଗଛୁଇଁ ଟୋଳା,
ଏଣିକି ତ ଦିନେ ନା ଦିନେ
ଏଠୁ ବାହୁଡ଼ା-
ଖଳାବାଡ଼ିର ଉଠିଆ, କ୍ଷେତବଢ଼ା
ଲୁଚି ଗଲାଣି କୋଉଦିନୁଁ
ଭୁଲି ହୁଏନା କିନ୍ତୁ...

ଆମେ ଘରଟେ ତୋଳିଥିଲେ-
ବଗିଚା, ପୋଖରୀ, ଗଛବୃକ୍ଷ
ତୁମ ଆଖି ଭିତରେ ପ୍ରତିବିମ୍ବ ମୋର
ମୋ କପାଳରେ ତୁମ ଗଭୀର ଚୁମ୍ବନର ଦାଗ !

ତେନ୍ତୁଳିଗଛର ଶିର୍ ଶିର୍ ପବନ
ଖିତ ଗାଡ଼ିଆ- ସବୁ କେମିତି ବଦଳିଯାଇଚି
ହେଇଯାଇଚି ଚିକ୍‌କଣ
ହେଲେ, ଆମ ମନ, ଏତେ ଦିକ୍‌ଦିକ୍
ସତେ କି ସିଂଘିବୁଡ଼ା ଜୀବନ !



## ଏଣିକି ଅୟମାରମ୍ଭ

ଆରମ୍ଭର ଶେଷଥାଏ,
ଶେଷ  ବି ଥାଏ
ଯୋଉଠୁ ଆରମ୍ଭ ହୁଏ ।

କେଉଁ ସନ୍ତର୍ପଣରେ, ନିଭୃତରେ ଡ଼ାକିନିଏ
କିଏ କେଜାଣି, ଡ଼ାକେ କି ମନକୁମନ
ଚାଲିଯାଆନ୍ତି ସେମାନେ
କେତେ ଏକା କରିଦିଅନ୍ତି -
ଭୂଗୋଳର ଦୂରତା ବି ଯେତିକି
ମଣିଷର ଉପସ୍ଥିତି ବି ସେତିକି
ଦୂରରୁ ଦୂରତର
ପୁଣି ଦିନେ ବିଦାୟ, ଜାଣିପାର ।

ନ ଜାଣି ପାରିଲେ ବି
ସମସ୍ତଙ୍କୁ ଛାଡ଼ିବାକୁ ହେବ
ନିଜ ନିଜ ଭୂଗୋଳକୁ
ନାମରୂପକୁ
ପ୍ରିୟଜନକୁ ।
ସତ୍‌କୃତି ବଂଚିରହିବ ଭାବିଲେ ବି

ସେ କେତେଦିନ !
ଅଖଣ୍ଡ ଅପରିକଳ୍ପିତ ଶୂନ୍ୟ,
ବ୍ରହ୍ମାଣ୍ଡକୁ ଚିହ୍ନେ ବା କିଏ
ଚିହ୍ନିବାକୁ ଚେଷ୍ଟାକରେ ଯିଏ,
ସେ ଚେଷ୍ଟା ବି ଅସମ୍ପୂର୍ଣ୍ଣ ।

ଯାହାକୁ ଆପଣାର ରକ୍ତପରି
ଗ୍ରହଣ କରିଥିବ ମଣିଷ
ଘଡ଼ିଏ ନ ହେଲେ ଆତ୍ମା ଛଟପଟ-
ନଥିଲେ ନ ଚଳିବ-
ହୃଦୟ ଫାଟିଯାଉଥିବ ଯାହାର ଅଦର୍ଶନରେ
ସେ ବି ଖସିଯିବ ବା ସମୟ ତାକୁ
ଖସେଇ ନବ ତୁମ ଆଖପାଖରୁ ।

ଉଇଁଆସୁଥିବା ନିର୍ଭରତା ଆଲୁଅ ବିଞ୍ଚିଲା ବେଳକୁ
କିଏ ପୋଛିଦେବ -
ଯେ ଆଦି ଅନ୍ତହୀନ ବ୍ରହ୍ମାଣ୍ଡରେ
କାହାକୁ ବା ପଚାରିବ ତୁମେ ?
କାହିଁକି ସବୁ କିଛି ଦୂରେଇଯାଏ, ହଜିଯାଏ ?

ଅସଂପୂର୍ଣ୍ଣତାର ଅୟମାରମ୍ଭ ଯେ
ଯେ ବି ସଂପୂର୍ଣ୍ଣତାର ନୂଆ ଦିଗ,
କୁନି, ଛୋଟିଆ ପୃଥିବୀ ମଝିରେ
ମୁଁ, ତୁମେ ବି କେଡ଼େ ହ୍ରସ୍ୱ, କେଡ଼େ ସୀମିତ !
ପୁଣି କେତେ ଅଳ୍ପ ଦିନର !

□

# ସେ ସତେ ଅପରୂପ !

ଅତୀତରୁ ଖିଅ ଓଟାରିଲେ
ସିଧା ଆସେନା, ଗୁଡ଼େଇ ତୁଡ଼େଇ ହୁଏ ।

ମୋ ରୋମାବଳୀରେ ଫଗୁଣର ଡ଼ାକ ଶୁଭେ-
ଆଉ  ଶୂନ୍ୟରୁ ଓଟାରିଲେ ମଂଜିଟିଏ ଖସିପଡ଼େ-
କହେ ମୁଁ ବଢ଼ିବି, ଗଛଟେ ହେବି
ତୁମେ ଦେଖିବ ନାହିଁକି ?
କୋଉ ଗଛ ଅଂକୁରିତ ହେବା
କ'ଣ ଏତେ ସହଜ ?
ଯଦି ତୁମେ ନଥାଅ, କେହିତ ଥିବେ
କିଏ ରସ ଟଳମଳ ଫଳ ଚାଖିବ ମୋର !

ନିଜ ସୁଖକୁ ପିଇଯିବାକୁ ପ୍ରସ୍ତୁତ ଯିଏ
ସେ କ'ଣ ବୁଝେ ଗଛଡ଼ାଳ କେତେ ଜାତିର
ଚଢ଼େଇ ବସା କେତେ ଜାତିର
କେତେ ଆଶା ଆଉ ଆଶ୍ରାର ଗନ୍ତାଘର
ମୋର ରୋମରୁ ଜାଂଗୁଲୁ ଜାଂଗୁଲୁ ରାତିରେ
କିଏ ଡ଼ାକେ ?

ଏଇ ଡ଼ାକଟି ମତେ ଲାଗେ କୋଉ ଜନ୍ମାନ୍ତରର
କୋଉ ଏକୁଟିଆ ଆଶ୍ରା ଲୋଡୁଥିବା
ଗୁଣ୍ଡୁଚିର,
କିଏ କାହାକୁ ଚିହ୍ନି ନଥିବା ଲୋକଙ୍କ ଗୋଳ,
ଭାବନ୍ତି ସେମାନେ, ତାଙ୍କ ଅଦିବ୍ୟ ବଡ଼ପଣର
କ୍ଷମତାର, ଧନର ।

କାଲି କଥାକୁ ତ ଡ଼ର ନାହିଁ-
ତୁମେ କଦାପି ଜାଣିବ ନାହିଁ ତା'ର ରୂପ
ନ ଆସିଲା ଯାଏଁ ସେ ଅପରୂପ ।

ତାକୁ ଅକସ୍ମାତ ସାମ୍ନା କରିବା ଅନିବାର୍ଯ୍ୟ
ଛକି ଛକି ଆସୁଥିବ ସେ
କୋଉ ରୂପରେ କେଜାଣି
ତେଣୁ ତୁନିପଡ଼ ।

ଏତକ ଭାବି ନିଅ
ଅତୀର ଖିଅ ଛନ୍ଦିବ ନାହିଁ ତୁମକୁ
ସେ ଜାଣେ, ତା' ପାଇଁ ନିରର୍ଥକ
ତୁମ ସମୁଦ୍ରେ ଯାକର ଲୁହ ।

□

# ବୁଝ ତ କ୍ଷମା କ'ଣ ?

ଛାପିଛାପିକା ଅନ୍ଧାର,
ଆକାଶରେ କିଛି ତାରା,
ଦୂରରେ ସଉଧମାଳ-
କେଜାଣି, କୋଉ ଅଭିଶାପରେ
ସନ୍ତୁଳି ହୁଅନ୍ତି ଯେ ମଣିଷଦଳ
ପଶୁ, ପକ୍ଷୀ, ଘଞ୍ଚ ଜଂଗଲ
କାହିଁକି ପାଣିଫାଟିଯାଏନା ଗର୍ବ ଔଦ୍ଧତ୍ୟ,
ମଣିଷ ବି ହାତ ବଢ଼ାଏନା ମଣିଷ ଆଡ଼େ
ସବୁଠି ଆବଶ୍ୟକତା, ଅଭିସନ୍ଧି
ଗୋପନ ଉଦ୍ଦେଶ୍ୟ ।

ଯେ ଯୁଗ କେବେ ସରିବ ?
କେବେ ମୁର୍କି ହସିଦବ ଯେ ପୃଥ୍ୱୀ ?
କ୍ଷମା-ଉତ୍ତୁଙ୍ଗ ଛିଡ଼ାହବ, ଡାକିବ-
ଆସ- ଭୁଲିଯିବା ବୈରତା
ଧ୍ୱଂସ କି ବୈରଭାବ ନୁହେଁ
ଆମ ପାଖରେ ଛିଡ଼ାହବ, ବଂଚାଇ ରଖିବ
ଲୁହ ପୋଛିଦବ କେବଳ କ୍ଷମା, ଭଲ ପାଇବା-
ସ୍ୱର୍ଗୀୟ ପ୍ରତିଶୋଧ
ହେଉପଛେ ତାହା
ସ୍ୱର୍ଗର ସୁବାସ, ସ୍ନିଗ୍ଧତା, ପ୍ରେମ ଭରପୁର
ତାକୁ ବୁଝ, ଆଚ୍ଚର ।

ଦେଖିବ, ସେହି ମହାମହିମ ମାନବର
ଶୁଭାଶିଷ ଫଳିବ । 

# କପଟୀ

ସେହି ଦିନ ହିଁ
ଧରାପଡ଼ିଗଲା ତୁମ କପଟ !
ଏକଦମ୍ ଏକା ବୋଲି ମୁଁ ଭାବୁଥିଲି,
ଭାବୁଥିଲି ମୋ ସାଥିରେ ତୁମେ
କଥା ନ କୁହ, ନୀରବତା କ'ଣ କମ୍ କହିପାରେ ?

ତୁମେ ମୋର ପାଖେ ପାଖେ ଅଛ
ଏ ଅହଂକାରକୁ ମୋର ବୁଝି ନ ଥିଲି ।

ଅଥଚ, ଯୋଉଦିନ ପୁଷ୍ପବୃଷ୍ଟି ହେଉଥିଲା
ମୋ କବିତା ଉପରେ, ମୋ ମସ୍ତକରେ,
ମୋ ଅଜ୍ଞାତରେ କୋଡ଼ିଏଟି ଛୁଞ୍ଚି ଗଳିଗଲା
ମୋ ଦେହସାରା,
ମୁଁ ଅନାଇଁ ପାରିଲି ନାହିଁ-
ମୁଁ ତ ଇଚ୍ଛିନଥିଲି ଯେ ପୁଷ୍ପବୃଷ୍ଟି
ଲୋଡ଼ି ନଥିଲି ବି ସମାରୋହ ମଣ୍ଡପ,
ମୋର ମୁଁ କେବେ ଦି'ଟା ଶବ୍ଦଙ୍କୁ ଅଣ୍ଡାଳୁଥିଲି ତ
କେବେ ହସୁଥିଲି, କାନ୍ଦୁଥିଲି
ଭାଗ୍ୟ ଆଦରି, ନିଜ ଅହଂକାରକୁ ବୁଝି ନଥିଲି ।

ଏବେ ଜାଣିଲି, ତୁମେ
ସତକୁ ସତ ଭଲ ପାଉନଥିଲ ମତେ ।
ମୋର ତ ଅପର୍ଯ୍ୟାପ୍ତ ତ୍ରୁଟି
ସୁଧାରି ପାରିଲି ନାହିଁ କେବେ-
ତଥାପି ତୁମଠାରେ
ଯେ ନିର୍ଭରଶୀଳତା ମିଛ ନଥିଲା
ସ୍ୱାର୍ଥ ସର୍ବସ୍ୱ ହୋଇପାରେ ହୁଏତ,
ନହେଲେ ତୁମେ କରିନଥାନ୍ତ କପଟ ।

ଅନ୍ତତଃ ହାତଧରିଥାଆନ୍ତ ତ କ୍ଷଣକ ପାଇଁ
ଯେ କ'ଣ କମ୍ ହୃଦଫଟା ଛଟପଟ
ମୋ ଛାତି ଉପରେ
ମୂକ ଶବ୍ଦର ଆଘାତ !

□

## କୁନି ଇନ୍ଦ୍ରଧନୁ, ମତେ ଡ଼ାକ୍‌ନା-

ପଦ୍ମଫୁଲର ପ୍ରତିବିମ୍ବ ତଳେ
କେତେ କ'ଣ ଲୁଚିଥିଲା-
ପରାଗ, ପୁଷ୍କର, ପୋକ
ଆଉ କଳାନାଗ ।

ତୁମେ ମତେ ବଢ଼େଇ ଦେଲ ମହମହ ପଦ୍ମଗୁଚ୍ଛ-
ଫୁଲ ପାଖୁଡ଼ାପରି ଝରି ପଡୁଥିଲା ଲୁହ-
କିଏ ବିଲବାଛୁଥିଲା ପାଖରେ
ଅଣ୍ଟାରେ ତା'ର କୁନି ଛୁଆଟେ
ଚିହ୍ନିବା ସହଜ ନୁହଁ
ଏପରିକି ନିଜକୁ ଚିହ୍ନିବା ।

ମାଆର ସ୍ନେହକୁ ଟିକେ ଟିକେ ବୁଝିନବା ।
ତୁମେ ମୁଁ ପରସ୍ପରକୁ ଚିହ୍ନି ରଖିବା ତ
କେତେ ଦୂରର କଥା ।

ଅପମାନରେ ଫେରିଗଲ ତୁମେ,
ଅଭିମାନ କରିନ ବୋଧେ,
ମତେ ଲାଗେ,
କିଏ ମୋର ସୁବର୍ଣ୍ଣ-ସ୍ୱପ୍ନକୁ ଲୁଟିନେଲା-
ଚତୁର୍ଦ୍ଦିଗ ଅନାଇଁ ଖୋଜି ଖୋଜି
ଦୋଷକାରିଣୀ ହେଇ
ଖାଲି କହି ଲାଗିଲି, ବେହିସାବୀ, ସ୍ଥିତିହୀନା ମୁଁ ।

ଝପ୍ ଝପ୍ ବର୍ଷାରେ ଓଦାହେଲି
କହି ଲାଗିଲି
କୁନି ଇନ୍ଦ୍ରଧନୁ,
ମତେ ଡ଼ାକ୍‌ନା, ଡ଼ାକ୍‌ନା ଆଉ ।

□

# ନିଦ

କେତେ ଭଲପାଏ ମୁଁ ନିଦକୁ
ନିଦ କିନ୍ତୁ ଧରାଦିଏନା, ଲୁଚକାଳି ଖେଳେ ।
ଅତି ଛଟପଟରେ ତାକୁ ହାତ ଯୋଡ଼େ
ଦେଖ୍ ତୁ ଦରକାର, ମୁଁ ବଂଚିବାକୁ
ନହେଲେ, ମୁଁ ଖୋଜନ୍ତି ନାହିଁ ତୋତେ ଜମାରୁ-

ଯାହାର କୁନି ପାପୁଲି ଠେଲି ଠେଲି
ନିଦରୁ ଉଠାଉଥିଲା ମତେ
ସେ ଉଡ଼ିଗଲାଣି ବସାରୁ
ବିଶାଳ ଏକ ଜଗତ ମଝିକୁ
ଦେଖା ମିଳେନା ତା'ର ।

କପାଳରେ ଆଖିରେ
ଚନ୍ଦନଟିପା ଆଙ୍କିଥିଲା ଜଣେ
ତାର ଉଷୁମ ଓଠରେ
ସେ ବି ନାହିଁ ଆଉ ଆଖପାଖରେ ।

କିନ୍ତୁ ମୋ ଜିଦ୍‌କୁ ଦେଖ, ସ୍ୱପ୍ନ ନଥାଉ
ମୁଁ ନିଦ ଯିବି ଯେମିତି ହେଲେ ।



# ଅନ୍ଧ ଚନ୍ଦ୍ର ଦେଖିବ

ପବନ ସ୍ତର ସ୍ତର ହେଇ ପହଁରୁଚି
ମୋ ଭିତରେ ପାଣିଆଉ ପବନ ପରି
କାନ୍ଦଣାର ସୁଅ ଛୁଟୁଚି ।
ମାଇଲ ମାଇଲ ଧରି କୁରୁକୁରୁ ହସ କାହାର
ଉଡ଼ି ଯାଉଚି ପବନରେ
ଏଣେ, ମୁଁ ପହଞ୍ଚିପାରିନି
ଶବ୍ଦର ପାଖାପାଖି ।
ପାଠକର ବିହ୍ୱଳତାକୁ ଛୁଇଁବି କେମିତି ?
ଘରେ ଘରେ ଦୀପ ତ ନାହିଁ-ଇଲେକ୍‌ଟ୍ରିକ୍ ଆଲୁଅ ।
ଅନ୍ଧ ଯଦି ପଚାରେ ଚନ୍ଦ୍ର କେମିତିକା ?
ଉଷ୍ଣୁମ କରିଦିଏ ନାହିଁ ତ କିଛିକୁ ? ତେବେ ?
କୋଉ ଗୁମ୍ଫା ଭିତରୁ ଉବୁକି ଆସେ
କୋଉ କାନ୍ଦଣା-
ଅନ୍ଧ ଚନ୍ଦ୍ର ଦେଖିବକି ସତକୁ ସତ ?
ବିଜ୍ଞାନର କାରିଗରୀ କରିପାରୁଚି ତ
ସତକୁ ମିଛ
ମିଛକୁ ସତ ।
ନହେଲେ ବା, ମହାଭାରତର ନାୟକ ଯଦି କଳାରଂଗକୁ
ଛାଡ଼ିଦେବେ ଅନ୍ଧତୀର ପରି, ଧନୁପରି,
ଚନ୍ଦ୍ର ଫୁଟିବ ।



# ନିଷ୍ଫଳ ସମୁଦ୍ର

ଜଣେ କବି କହିଥିଲେ
ଯେ ସମୁଦ୍ରେକ ଲୁହ, ସ୍ତ୍ରୀଲୋକ ଆଖିର ।
ମାତ୍ର, ସମୁଦ୍ରର ପରିମାପକ କାନ୍ଦ ନୁହେଁ, କେବେହେଁ,
ସମୁଦ୍ର ତ ଉଚ୍ଛଳ, ଛଳଛଳ,
ଜଳଜୀବ, ପ୍ରବାଳ
ଆହୁରି ଅମିତ ରତ୍ନର ଗନ୍ତାଘର ।

ହେଲେ କାନ୍ଦ-
ଖାଲି ସ୍ତ୍ରୀଲୋକର ନୁହେଁ-
ମାନବାତ୍ମାର ଅମାପ ଯନ୍ତ୍ରଣା, ଅପମାନ ହାହାକାର
ଧିକ୍କାର-ସବୁମିଶି ହୋଇପାରେ ସମୁଦ୍ର ।
ଦୃଶ୍ୟ କେବଳ ନୁହେଁ
ଅଦୃଶ୍ୟ ରୂପ ସତ୍ୟର ।

କେଶବ, ଶୂକର ରୂପରେ ପୃଥିବୀକୁ
ଟୋଳି ଆଣିଥିଲେ ସମୁଦ୍ରରୁ-
ତଥାପି, ସାରା ପୃଥିବୀର ଅସୁମାରୀ କାନ୍ଦ
ଲୁହ ନୁହଁ କେବଳ ।

ସ୍ତ୍ରୀ ଲୋକର ଗର୍ଭରେ ସହଜେ ତ ରତ୍ନ ଥାଏ
ହେଲେ, ଉଜୁଡ଼ା କ୍ଷେତ ମଝିରେ, ଆତ୍ମଘାତୀ କୃଷକର,
କୋହ, ଅନାଥ ବାଳକର,
'ନିର୍ଭୟା'ର ବ୍ୟାକୁଳତା, କେଉଁ ଗୁଣରେ ଅଗଭୀର ?
କୋଳ ଛୁଆ, ପୋଡ଼ି ମରିବାର, ଅଜସ୍ର ଲୁହ ମୋ ଆଈର,
ବଟା ସୋରିଷ ରଂଗର ରାସ୍ତା ଉପରେ
ଶଗଡ଼ ଭିତରେ ଛାତିଫଟା କାନ୍ଦଣା-

ସ୍ୱାମୀ ସୋହାଗ-ବଂଚିତା
ଝର୍ଝର ଲୁହ ନିଗାଡୁଥିବା ମୋର ଯୁବତୀ ବୋଉ-
ଏ ସବୁ ଲୁହ ଓ ବ୍ୟଥା
ଏଇ ତୀବ୍ର ହୀନିମାନ, କ'ଣ ଯଥେଷ୍ଟ ନୁହଁ ?

ହଜାର ହଜାର ପୂର୍ବଜନ୍ମର, ଯେ ହତାଶା
ସମୁଦ୍ର ଗର୍ଜନ ଠାରୁ
ଭଲା, କେଉଁ ଗୁଣରେ ନ୍ୟୂନ ?

ପତିଠାରୁ ପଦାଘାତ ସହୁଥିବା
ସୁନ୍ଦରୀ ନବବିବାହିତାର
ଜର୍ଜର ପାପୁଲି, ଓଠଚିପା କାନ୍ଦ,

ଏଣେ, ଯେ ଗଜାଗଛରେ କୁରାଢ଼ୀ ଚୋଟ
ରସ ନିଗିଡ଼ି ପଡୁଥିବ, ସତେ କି ଲୁହ ।
ତୁମେ ଗୋଟେ ଚୋଟ ପକାଅ ପଛେ
ଗଛ ସ୍ନେହବଶ, ସମ୍ଭାଳିଯିବ, ସତ,
ହେଲେ, ତୁମେ କଦାପି ନିଶ୍ଚିହ୍ନ କରିପାରିବ
ତା'ର କ୍ଷତ ?

ଅଶେଷ ଦୁଃଖ ଯନ୍ତ୍ରଣାର, ଫୁଲ ଫୁଟେଇ,
ଝଡ଼େଇ ଘୂରିଲାଗିଥିବା ପୃଥ୍ବୀ
ତୁମେ ତୁନି କରିପାରିବ, ତା'ର କାନ୍ଦ ?
ତାର ସୁନ୍ଦରପଣ, ସୁଖ, ଆଲୋକ, ଆଦର
ତା'ର ସଂଜ ସକାଳ
ପ୍ରତ୍ୟାଶାରେ ଭରପୂର ।

କାନ୍ଦଣା ପୋଛି ଦେଇ, ତୁମେ ତାକୁ କୋଳକର ।
ଘାସ ଖିଏକୁ, ଆଉଁସି ଦେବା ବି କଅଁଳପଣ,
ଗେହ୍ଲା, ତୁମ କୋଳର ।

ଏ କଥା ସତ, ଆଂଜୁଳାଏ ପାଣି ଭିତରେ ସମୁଦ୍ର-
ସଂଭବିପାରେ ଆଖିପତାତଳେ ସମୁଦ୍ର
ସାତ ସମୁଦ୍ର ଆମ ସମସ୍ତଙ୍କ ଭିତରେ ।

ଘନ ବଉଦ, ସୂର୍ଯ୍ୟ ଚନ୍ଦ୍ରର ପ୍ରତିବିମ୍ବ ସହିତ
ଅନାଅଁ ତୁମେ, ଦୂର ଆକାଶର ତାରା-
ଲାଗେ କେତେ ନିଜର, ନିକଟର ।

ସମୁଦ୍ର ଗର୍ଜେ, ତାର ଗର୍ଭ ସ୍ଥିର ନିଶ୍ଚଳ ।
ହେଲେ ଆମ ସାଇତି ରଖା କାନ୍ଦଣା
ଛଟପଟ, ଆମର ।

□

# ଆଉଁସି ଦିଅ

ତୁମେ ଅନେଇଁ ରହିଚ ଯେ
ଲାଲ୍ ଟକ୍ ଟକ୍ ପାଖୁଡ଼ା ମୋର,
ମୋ ପାଖକୁ ଆସି ମତେ ଛୁଇଁ ଦିଅ ଟିକିଏ
କଣ୍ଟା ଫୁଟିବନିମ, ହୁସିଆରିରେ-

ଆଉ ମୁଁ ଉଡ଼ିବୁଲୁଚି ରଂଗରଂଗ
ଛିଟ ପ୍ରଜାପତି
କେତେ ବା ଆୟୁଷ ମୋର !
ତୁମେ ମୁଗ୍ଧ ବିଭୋର
ତୁମ ଆଖିତାରା ମୋ ପଛେ ପଛେ,
ଅଥଚ ଠିଆ ହେଉନ ଘଡ଼ିଏ
ପତାଇ ଦିଅ ପାପୁଲି
ମୁଁ ବସି ପଡ଼ିବି ମୁହୂର୍ତ୍ତେ
ତୁମକୁ ଡ଼ର ନାହିଁ ମୋର, ବିଶ୍ୱାସକର ।

ଝୁଲିପଡ଼ିଚି ଅର୍କିଡ଼ର ପସରା
ତୁମ ଫାଟକପାଖ ବଡ଼ ଗଛ ସନ୍ଧିରୁ
ମୋ ଚେରରେ ମାଟିନାହିଁ ସତ,
ହେଲେ, ସେ ବିରାଟ ଦ୍ରୁମ
ଯୋଗାଇଛି ଭାତ ପାଣି,
ମତେ ଛୁଇଁ ଦଉନ ଟିକେ ।
ଦେଖୁଦେଖୁ ମୋ ଶୀରି
ତୁମେ ଭୁଲିଯାଇଚ ନିଶ୍ଚେ,
ଏବେ ମୋ ଫୁଲକୁ ଛୁଅଁ
ମତେ ନିଜର କର ।

ଘର ସାମ୍ନାର ଗଙ୍ଗଶିଉଳି ମୁଁ-
ସଁବାଳୁଆ ମନ୍ଦାଏ ସତ-
ତୁମେ ଡ଼ାଳ ହଲାଇ ଦିଅ ତ
ଝଡ଼ି ଗଦାହେଇ ପଡ଼ିବି ମୁଁ
ଆଂଜୁଳାରେ ତୋଳିନିଅ ଭୂଇଁରୁ
ବାସ୍ନା ଭରିଦେବି ଚାରିଆଡ଼
ଛାତି ଯେ ଥରି ଉଠୁଚି ମୋର ।

ଆଉ, ତୁମ ପାଚେରୀ ସେପଟ ନିମଗଛ
କାଇପିମ୍ପୁଡ଼ି ଭରଭର ।
ଡାଳରେ କଜଳପାତି ତ
ପୁଣି କେତେ ଅଜଣା ଚଢ଼େଇ,
ଝର୍କାବାଟେ ଚାହିଁ ରହିଚ ଯାହା
ପାଖକୁ ଚାଲିଆସ,

ମୋ ଆବୁଡ଼ା ଖାବୁଡ଼ା କଳାଗଣ୍ଡିକୁ
ଘୃଣା କରୁଚ କି ? ନାଇଁ ଗୋ,
ଏ ପିମ୍ପୁଡ଼ି ଚ଼ାଲିଚନ୍ତି ଗୋଟିଏ ଧାଡ଼ିରେ,
ଜାଗାଅଛି ତୁମପାଇଁ
ଆଉଁସି ଦିଅ ତ ପ୍ଲିଜ୍, ଥରେ-
ମୁଁ କେତେଖୋଜେ ତୁମକୁ
ତୁମେ କ'ଣ ବୁଝିପାର ?
କଥା କହିପାରେନି, ଚାଲିପାରେନି କି
ହସି ପାରେନି ସିନା
ଭିତରେ ଭିତରେ କେତେ ଯେ ଭଲପାଏ
ତୁମକୁ , ତୁମେ ଜାଣିପାର ?

କାହାର ସାବ୍‌ଜାପଣତ
ଉଡ଼ିଯାଉଚି ଝିରିଝିରି
ମୋ ପାଖଦେଇ, ଯେ ତୁମର ନୁହଁ ତ ?

ଓଦାବାଳରୁ ଝଡ଼ିପଡୁଚି ପାଣିଚୋପା
ମୁଁ ଉଲୁସି ଉଠୁଚି ଥରକୁ ଥର ।
ଜାଣେ, ତୁମ ବିହ୍ୱଳ ଆଖି
କଂପ କଂପ ଓଠ
କହିଦଉଚି
ତୁମେ ମୋତେ ଭଲପାଅ, ଭଲପାଅ !

☐

# ସମ୍ଭଳ

ସେଦିନ କୁରୁକୁରୁ ହସ ଶୁଭିଲା
ଦାଣ୍ଡପଟ ଅନ୍ଧାର-ବାରିପଟେ ମୁଁ
ଅପେକ୍ଷାରେ ଥିଲି ତା'ର-
ସେ କାହିଁ ? ମୁଁ ଫେରିଆସିଲି ।
କହିଲା ସେ, "କାଲିରାତି
ମୁଁ ତ ଆଦୌ ଆସିନାହିଁ ।"
କିଏ ତେବେ ? ସ୍ପଷ୍ଟ ଶୁଭିଥିଲା ତା'ର ହସ-
ଯେ କ'ଣ ଭୋଜବାଜି ?

ଅସଂଖ୍ୟ ତାରା
ଆକାଶ ସାରା ଚୁପ୍‌ଚାପ୍
ଦିନସାରା ସେମାନେ ବୋଧେ ପବନରେ
ଆଉଜି ଥାଆନ୍ତି ଗଛଡ଼ାଳରେ-
ଯୋଉ ଡାଳରେ ମୋ ସାନଝିଅ
ଦୋଳିଖେଳେ-

ଆକାଶରେ ବଉଦ କେତେ ଆକାରର
ହାତୀଟେ ମିଳେଇ ଯାଏ ତ
ଘୋଡ଼ା ଡେଇଁପଡ଼େ
ଅଙ୍କାବଙ୍କା ଘୁଷୁରୁ ଘୁଷୁରୁ ସର୍ପ
ଖଣ୍ଡ ଖଣ୍ଡ ଛିଡ଼ିପଡ଼େ-
ଆକାଶର ସତେରେ କିଛି ଅର୍ଥ ଥାଏ ?
ଥାଏ । ସେ ଆମକୁ ଘୋଡ଼ାଇ ରଖେ ।
ହାଉଯାଉ କୁକୁର ଛୁଆ

ଭୋକ ଉପାସରେ ଆଉଟି ପାଉଟି
ଅଇଁଠା ଖୁଣ୍ଟନ୍ତି, ସେମାନଙ୍କର
ଘର ନଥାଏ ।

ମୋର ବି କୋଉ ଘର ଅଛି ?
ଘରଟିଏ ଥିଲା ଯେ
ଅତି ସୁନ୍ଦର ଘର ।
ଭାଙ୍ଗି ପକାଇଲେ ତାକୁ
ଦୁଇ ଚାରିଟା ଦୁଷ୍ଟଲୋକ ।
ଏପରି ଦୁଃସମୟରେ
କବିତାର ଶବ୍ଦପରେ ଶବ୍ଦ ବାହାରି ଆସିଲା
ପର୍ବତରୁ ନିର୍ଝର ପରି
ପୀଡ଼ା ଓ ସହନଶୀଳତାକୁ
ମୂର୍ତ୍ତିମନ୍ତକରି ତୋଳିଲା ।
ତୁମେ ଏକଥା ସ୍ୱୀକାର କରିବ ତ କର
ନହେଲେ
ମତେ ଏକା ଛାଡ଼ି ଚାଲିଯାଅ ।

ସାରାଟା ସଂସାରରେ ମୋ ପାଇଁ
ସ୍ନେହ ଆଦର,
ମତେ ଦେଖିଲେ ଉଲୁସିଉଠେ ପୋଷା କୁକୁର
ଗୁଣ୍ଡୁଚି, ଶୁଆ, କୁମ୍ଭାଟୁଆ
ଫୁଲ, ଚଢ଼େଇ, ଗଛପତର
ଏଣିକି, ସେମାନଙ୍କ ଆଦର ହିଁ
ମୋର ସମ୍ବଳ ।

□

# ସଂପର୍କ

ଆକାଶ, ବତାସ, ପାତାଳରୁ
ଲମ୍ବି ଆସିଚି ଡୋର
ଛନ୍ଦି ପକାଇଚି ଦେହକୁ, ଆତ୍ମାକୁ ।

ଅଚିହ୍ନା ହେଲେ ହେଉ
ମାଟି, ଘାସ ଗଛଲତା ଜଙ୍ଗଲ ପାହାଡ଼
ପଶୁପକ୍ଷୀ ଫୁଲଫଳ
ଫୁଲ ପାଖୁଡ଼ା ବିଂଚି ବିଂଚି ତୁମେ ବାଟ ଚାଲ
କିଏବା ନିଜର, ଆଉ କିଏ ପର ?
କେବଳ ମଣିଷ ହିଁ ସଂପର୍କ ଭାଙ୍ଗେ
ନିଜ ନିଜ ଭିତରେ
ଯଦି କୋମଳତା, ବ୍ୟାକୁଳତା ଥାଏ
ତେବେ ପୁନର୍ବାର ଯୋଡ଼ି ହୋଇପାରେ ।

ଈର୍ଷା, ଦ୍ୱେଷ, କ୍ରୋଧ, ଅସହିଷ୍ଣୁତାର
କେତେ ଛୁଆଁମୁନ ଗଳିଯାଏ
ସଂପର୍କର ଡ଼ୋର ଭିତରେ-
କଣାକରେ, ଛିଣ୍ଡାଏ ତାକୁ, ଟିକିଟିକି କରେ
ଅତୁଆ କରେ ସୂତା, ଗଣ୍ଠି ପକାଏ-
ସେଇଠି ହୁଏତ ସଂପର୍କ ସରିଯାଏ ।
କାହାକୁ ନେଇ ମଣିଷ ବଂଚେ ତାହେଲେ ?
ସ୍ୱର୍ଗର ନଈ, ବଉଦ, ଚନ୍ଦ୍ରସୂର୍ଯ୍ୟ ତାରା

ୟେତ ଅଜାଡୁଥାନ୍ତି ଆଦର ଆହୋରାତ୍ର
ଛୁଇଁ ଦିଅନ୍ତି ଉଦାରତାରେ
ପଶୁପକ୍ଷୀ ବୋଲମାନନ୍ତି,
ଫୁଲ ହସେ, ଫଳଝଡ଼ି ଗଦା ହୁଏ-
କହେ 'ନିଅ, ମନଇଚ୍ଛା ନେଇଯାଅ ।'

ଘାସ ଅରାକ ପାଦତଳେ କୁତୁକୁତୁ କରେ
କଂପାଏ ମେଦିନୀ ଚଢ଼େଇ ତା'ର ଚିଉଁଚିଉଁ ଡାକରେ
କୀଟ ପତଙ୍ଗ ବି ଦେହଘଷା-

କେବଳ ମଣିଷ
କ୍ରୋଧ, ଅସହଣିପଣ, ଗର୍ବ, ହିଂସା ।

ମଣିଷ ମଣିଷର ପ୍ରିୟତା ଭିତରେ
ଥାଏ ଡର, ସଂଭ୍ରମ, ସ୍ପର୍ଶକାତରତା
ଯଦି ତା' ନଥାଏ, ଭୁଲିଯିବା, ମନେପକାଇବା
ଏକାକଥା, ନାଁ ?
ମଲା ଜୀଇଁଲା ବି ଏକାକଥା ।
ପୃଥ୍ୱୀ ଶୋଇପଡ଼େ, ଗଛମାନେ ଶୋଇଶୋଇ
ସଜାଡ଼ନ୍ତି ନିଜକୁ
ଅଥଚ ମଣିଷ
ରାତି ଦିନ ଯଶ, ଧନ, ଅହଂକାରରେ ମାତି
ସଜାଡ଼ି ପାରେନା ନିଜ ସଂପର୍କକୁ ।

❑

# ଦୂରଦେଶ

ଦୋକାନ ବଜାରର ନାମଫଳକରେ
ଅଚିହ୍ନା ଭାଷାରେ
ଲେଖାଥିଲା ମୋ ନାଆଁ,

ପୁରୁଷ ଆଉ ସ୍ତ୍ରୀଲୋକ ସେଲ୍‌ଫୋନ୍‌ରେ
ଗପିଗପି ଯାଉଥିଲେ
ତୁମ ପାଖଦେଇ, ତୁମକୁ ଟପି ।
ତୁମେ ସଜମଲ୍ଲୀର ପେନ୍ଥାଏ ମାଳଧରି
ଝୁଲେଇବାକୁ ଗଲ ମୋ ବେଣୀରେ-

କ'ଣ ଗୋଟେ ଖାଦ୍ୟର ବାସ୍ନା
ପାଖ ରେସ୍ତୋରାଁରୁ ଛୁଇଁ ଦଉଥିଲା ମତେ
ସଂପର୍କ ନଥାଇ କେବଳ ଭାଷାର ଉଚ୍ଚାର
ଯେ କେମିତି ବେଳ ?

ପାଖ ନଈରେ ଥିଲା ସୁନ୍ଦର ପୋଲଟିଏ
ପାଣି ଉପରେ କେତେ ଜାତି ଚଢ଼େଇ-
ମୁଁ ଜାଣିଥିଲି ଯେ
ଛୁଇଁ ପାରିବିନି ସେମାନଙ୍କୁ ।

କିନ୍ତୁ କି ବିମୁଗ୍ଧ ମନ ମୋର, ଆଉ ଆଖି ଦୁଇଟି-
ଖୁବ୍ ଏକା ଲାଗୁଥିଲା ମତେ ।
କେମିତି ଯେ ପୃଥିବୀ, କେମିତି ସଂପର୍କ
କେମିତି ଯେ କଠୋର ଭାଷା-
ମୋ ଅଜ୍ଞତା, ମୋ ବୁଦ୍ଧିହୀନ ଆଚରଣ
ମତେ ଛଟପଟ କରୁଥିଲା-

ମତେ ଷାଠିଏ ବର୍ଷ ଟପିଗଲାଣି ।
କେଡ଼େ ନିପଟ ମୂର୍ଖ ମୁଁ ।
ମୋ ନାମଫଳକ ଅନ୍ୟଭାଷାରେ
ତଥାପି ମୁଁ ନିର୍ଲ୍ଲଜ ଭାବେ
ନିଜକୁ ଭଲପାଉଚି-
ଏ ଦୂର ଦେଶରେ
ସଂପର୍କହୀନ ଉଚ୍ଚାରଣରେ ।

□

# ପୁରୁଖା ପ୍ରେମର ଗହାଣୀ

ସତ୍ୟର, ପୁରୁଖା ପ୍ରେମର ଗହାଣୀ
ଯାହା କିଣି ନେଇଥିଲା ମୋତେ ସେଦିନ
ମୋର କବିତା ଝଂକାର ସାଂଗେ-
ଆଜି ମନେପଡ଼ିଲେ
ରକ୍ତ ବୋହୁଚି ଅଭ୍ୟନ୍ତରରୁ ।

ଧାଡ଼ି ଧାଡ଼ି ପିମ୍ପୁଡ଼ି ଘାସବୁଦାତଳେ ଚାଲିଛନ୍ତି-
କି ଆନନ୍ଦ ତାଙ୍କର-
ମୁଁ କିନ୍ତୁ ଜାଣେ
କି ନିଦାରୁଣ ଯେ ବଂଚିରହିବା-
ଝୁରି ହେଉଥିବା ପ୍ରିୟଜନଠୁ ଦୂରେଇ ରହିବା
ଖୁବ୍ ଅନ୍ଧାର ଭିତରେ
କେହି କାହାକୁ ନ ଚିହ୍ନିବା,
ତଥାପି, ବାରିପାରିବା ଶବ୍ଦର ଦୀର୍ଘଶ୍ୱାସକୁ
ଶବ୍ଦର ପରିହାସକୁ
ଶବ୍ଦର ଗଭୀରତମ ବେଦନାକୁ ।

ମହୁମାଛିଟିଏ ମୁହଁ ଲଦିଚି ଫୁଲ ଉପରେ
ଶୋଷୁଚି, ଶୋଷୁଚି-
ମୁଁ କିନ୍ତୁ ଖୋଜୁଚି ଭିନ୍ନ କିଛି-
ତା' ମିଳିବ ନାହିଁ, ଜାଣି ସାରିଛି-
ଶବ୍ଦଙ୍କୁ ଗାଧେଇ ଦେଇଚି ଲୁହରେ, ରକ୍ତରେ,
ଉଡ଼ାଇ ଦେବାକୁ ଚାହୁଁଚି-
ଯାଅ, ଚାଲିଯାଅ ସେଇ ପାଗଳ କବିପାଖକୁ
ଏକୁଟିଆ ରହିବା ମୋର ନିୟତି
ମତେ ବିଶ୍ୱାସକର ।

ମଧୁର ମୋର ଧ୍ୟେ ଆତ୍ମଦହନ
ଦୟାକରି ସ୍ୱୀକାର କର ।



# ହରିଣୀ

ଲ୍ୟାମ୍ପ ଷ୍ଟାଣ୍ଡପରି ପତଳା, ସୁନ୍ଦର ଗୋଡ଼
ମାଆ ପଛେ ପଛେ ପିଲାକାଳ,
ପୁଣି ଡେଇଁବା, ଲୁଚିବା, ଦୌଡ଼ିବା, ଖୋଜିବା
ଝାଡ଼ ଜଂଗଲ-
ଆଜି ମୋର ଭାରି ଡ଼ର-
ମରିବାସହ ବାଜିମାରି ଆସିଚି ଏ ଯାଏଁ,

ଯେ କୋଉ ନୂଆକଥା !
ହିଂସ୍ରଜନ୍ତୁ, ଶିକାରୀ, ବଣନିଆଁ
ଶିକାରୀ ଜାଲର କିମିଆଁ-
କାହାକୁ କହିବି ମୋ ଛାତି ଭିତର
ହୃଦ ମୋର, ମୋ ସାଂଗେ
ଖେଳି ଚାଲିଥିବା କୁନିଛୁଆ- ?

ଶବ୍ଦ କେତେ କେଜାଣି ଆଡ଼ମ୍ବରରେ
ଫୁଟୁଚି ଗଦ୍‌ଗଦ, ଚିତ୍ର ବିଚିତ୍ର ଯେ ଦୁନିଆଁ,
ଶବ୍ଦମୟ କୁନିଛୁଆ ଗର୍ଭରେ,
ଆଉ ପାର୍ଶ୍ୱରେ, ମୁହଁ ଟେକି ଅନାଇଁବେ
ଘାସ ପତ୍ର ଖୁଣ୍ଟିବେ
ଚାରିଦିଗ ଅନାଇଁ ଅଳସ ଭାଙ୍ଗିବେ-
ବଣୁଆଁ ଚଢ଼େଇଙ୍କ ଫୁର୍‌ଫାର୍‌ରେ
ବିଭୋର ହେବେ,

କେତେ ଅକୁହା କଥା ଲେଖାଥିବ
ସେମାନଙ୍କ ମୁହଁରେ, ଆଖିରେ,
ଢ଼ଳଢ଼ଳ ଛଳଛଳ ବିହ୍ୱଳ ଆଖି
ଛାତି ତଳୁ ଫୁଟିବ, ଫୁଟିବ ଲଟାଫୁଲ
କାନରେ କେତେ ନୂଆ ଧ୍ୱନି, ଶବ୍ଦର ଚହଳ ।

ଅରମାକୁ  ସଜାଡ଼ିବାକୁ ଏଣେ ଛଟପଟ ମୁଁ-
ଅଥଚ ଯେ ଡ଼ର, ମୁଁ ମରିଯିବା ପାଇଁ ନୁହେଁ-
ଛାତି ଭିତରର ପେଟ ତଳେ ଗୁଂଜି ହେଇ
ଥଗୁଥିବା କୁନିକୁନି ଛୁଆଙ୍କ ପାଇଁ-
ନୂଆ ମୁହଁ, ନୂଆଦିଗ, ନୂଆ ଚିତ୍ର
ନୂଆ ହସ ଲୁହ ପାଇଁ
ଦୁନିଆଁକୁ ତଟସ୍ଥ କରିବା ପାଇଁ ।
କେଜାଣି, ବୁଝିବ କେହି  ?

ତୁମେ ତ କେବେ ବୁଝ
କେବେ ବୁଝନା-
କେହି କ'ଣ ବୁଝିବ ମୋର
ଶେଷଦିନର ଛଟପଟ ବେଦନା ?
ତୁମେ  ? ଜାଣେନା ।

□

## ଭୋର୍ ଚଢ଼େଇ

ଜହ୍ନ ଖସିପଡ଼ନ୍ତାକି ହାତରେ
ଆମ ପ୍ରକାଣ୍ଡ ନିମଗଛ ଡାଳରେ
ଅଠାମାରି ମୁଁ ଲଟକାଇ ଦିଅନ୍ତି ତାକୁ ।

ମୁଁ ମାଟି ଉପରେ ତ ଚାଲିଚି
ଆକାଶକୁ ଅନାଇଁ ।
କେବେ ଅନ୍ଧାର ଘନେଇବ
ଆଉ ବାଟ ନ ଦିଶିବ-
ବାଟ ନ ଦିଶିଲେ କିନ୍ତୁ ମୁଁ ଉଡ଼ିବାକୁ ଚାହିଁବି
ମରି ସାରିଲା ପୂର୍ବରୁ ନିଷ୍ଠେ,
ମତେ ଡେଣାହଲେ ଦର୍କାର ଖାଲି
ତିଆରିବି ନହେଲେ, ପକ୍ଷୀପରରେ,
ଚଢ଼େଇ ଛାଡ଼ିଯାଇଥିବା କାଠିକୁଟା ବସାକୁ ମିଶେଇ ।

ସତେକି ଆକାଶରେ ପ୍ରତିବନ୍ଧକ କିଛି ନାହିଁ
ସମୁଦ୍ର ଭିତରେ ଡଂଗା ପରି, ଗୋଟାଛାଏଁ ଉଡ଼ିଯିବି ଆକାଶରେ ।
ଅଜବ କଥା...କାହା ଲୁହ ପୋଛିବାକୁ ହାତ ବଢ଼ାଇଲେ
ହାତପାଉନି, ବୋହିଚାଲିଚି ଲୁହ
ହାତ ଦି'ଟା ବି ଯଥେଷ୍ଟ ନୁହଁ
ଜଣକର ହେଲେ ଲୁହ ପୋଛିବାକୁ ତ ଜୁ' ନାହିଁ,
ଆଉ ଯେ ସମୁଦ୍ରେ ଲୁହ !
ରାକ୍ଷସଙ୍କ ଗୋଳାବାରୁଦ,
କୃପାଣର ରକ୍ତମେଧ
କିଏ ଭଲା ସହିବ, ସମ୍ଭାଳିବ କହ ତ ।

ଭୋର୍‌ଭୋର୍ ଚଢ଼େଇଛୁଆଙ୍କ ଚିର୍ଚିରା
ଡରନାହିଁ, ଭୟନାହିଁ ଛଂଚାଣ, ସରୀସୃପ
କାହାରିପାଇଁ-
ତାଙ୍କ ରାବ ଶୁଣିଲେ ଲାଗେ
ଏ ପୃଥିବୀରେ ଆନନ୍ଦ ଅଛି,
ଜୀବନ ସ୍ପନ୍ଦନରେ କଂପୁଚି
ଚାରିଆଡ଼... ହିଂସା ନାହିଁ, ମରଣ ନାହିଁ-
ସେଇଥିଯୋଗୁଁ ଖୋଜୁଚି ମୁଁ ଡେଣା ହଳକ
ଚଢ଼େଇପାଲଟି ଉଡ଼ିଯାଆନ୍ତି-

ନିମ୍ବଗଛ ଉପରେ ଜହ୍ନ ଯଦି ତାଳିମାରେ, ହସେ
ତାକୁ ମୁଁ କୋଳେଇ ନିଅନ୍ତି
ମାଟିରୁ ଆକାଶଯାଏ
ପ୍ରେମର ଫୁଆରା ସିଂଚିଲାଗନ୍ତି...

□

## ୟେ ସବୁଦିନର-

ହସ୍ପିଟାଲ୍ ପ୍ରସୂତୀ ଭବନ
ଛାତି ଭିତରେ ଫାଙ୍କା ଜାଗା ଅରାଏ
ବୋଧେ ଦଳି ଚକଟି ଦେଇଚି କିଏ-
ପେଟ ଭିତରଟା ଆଉଣ୍ଡି ହଉଚି-
ଏଣେ ଲାଗୁଚି
ଚାରିଆଡ଼େ ମାନବିକତାର ଅନୁଛଗାନ
ୟେ କି ପ୍ରକାର ଅଘଟଣ!

କୋଉଠି ମୋର କ୍ଷତଚିହ୍ନ
ଦେଖାଇବି କାହାକୁ ?
ତୁମେ କହିଲ, ସମସ୍ତଙ୍କର କେଉଠି ନାଁ କୋଉଠି
ଥିବ କ୍ଷତଚିହ୍ନ।

ମୁଁ ହୁଏତ ପାଠପଢ଼ା ଛାଡ଼ିଲି
ବାଟବଣା ହେଲି
ପ୍ରଫେସର କହୁଥିଲେ, 'ଭଲଛାତ୍ରୀ ତୁମେ
ଛାଡ଼ିଦବ ପାଠପଢ଼ା ?"
ସେତିକିରେ ମୋ ମୁହଁ ଓ ଆତ୍ମା
ଉଜ୍ଜ୍ୱଳି ଉଠୁଥିଲା-
କିନ୍ତୁ ପୁଣି ବି ତ ଝାଉଁଳିଗଲା
ଗଛ ପରି ସହିଲି, ପଥର ହେଲି ।
କାବେରୀ, କାବିନୀ ଝର୍‌ଝର୍
କୁଆଡ଼େ ଗଲେ ସେମାନେ ଶୁଖି
ତଳ ଅତଳ, ଆମ ମହାନଦୀ-
ସାନ ମାଛଟିଏ ବି ବଂଚିବ ନାହିଁ ସେଠି ।

ଜହ୍ନଭଳି ଚକ୍‌ଚକ୍ ମାଛମାନଙ୍କ ପେଟ, ଛାତି
କୁଆଡ଼େ ଲୁଚିଗଲାଣି ଅନ୍ଧାର ପେଟରେ-
କେବେ ଫେରିବେ ସେମାନେ ?
ଜୀବନୀ ଭରିବେ ?

ମୋ ପାଟି ତ ଶୁଖି ଆଫା ଆଫା ।
କେତେ କେଜାଣି ବିତିବ ଆଲୋକବର୍ଷ
ସେମାନେ ଫେରିବେ ପୁଣି-
ଆମେ ନ ଥାଉ
ଯିଏ ହେଲେ ତ ଥିବେ-
ସତ, ସେମାନେ ଫେରିବେ
ନିଶ୍ଚେ ଫେରିବେ ।

□

# ଅଜରାମର

ଯଦି କିଛି ଜୀବନ ଅଛି, ଅଛି
ଯେ ପୃଥ୍ୱୀ, ଗଛବୃଛ, ଜୀବଜନ୍ତୁ
କୀଟ ପତଂଗ,
ତା'ହେଲେ ସତକହୁଚି
ଏଇ ଗଛ ହିଁ ସେ ଜୀବନ-

ମୂଳ ଡାଳପତ୍ର ଅଗ
ଫୁଲ, ଫଳ କେତେ ସଜୀବ, ଚଞ୍ଚଳ
ଆମେ ସବୁ ବା କେଇ ଦିନର,
ଦେଖୁନ, ଏ ଗଛଲଟା ଗୁଡ଼ାକ
କେତେ ସବୁଜ, ମୋହକ
କି' ଆସ୍ପର୍ଦ୍ଧା ସେମାନଙ୍କର !

ପିଜୁଳି ଗଛର ମୋଟା ଡ଼ାଳଟେ
ଛିଣ୍ଡି ପଡ଼ିଚି ଝଡ଼ରେ
ଗଲା ଜ୍ୟେଷ୍ଠମାସର ଅସମୟ ଦୌରାତ୍ମ୍ୟରେ ।

ଲଟକିଛି ଗାରେ କୋଉଠି,
ତଥାପି ଛିଣ୍ଡାଡାଳରେ ଆସିଲା
ଭୋଦୁଅ ମାସର ଫୁଲକଢ଼-
ମତେ ଲାଗିଲା, ଯେ କ'ଣ ସେଇ
ଅନ୍ୟ ଜଗତର ଖବର ?

ରୂପଶ୍ରୀ, ଜୀବନ ବେଦ ?
ଯାହା ମରିଗଲାପରେ ପୁଣି
ଗୁଣୁଗୁଣୋଉଚି ପଦେ ପଦେ ଗୀତ !

ନାଁ, ସେ ଅଜରାମର
ଗୁଂଫିତ ରୂପଶ୍ରୀ
ଆମ ପୃଥ୍ୱୀର, ଆମ ଜୀବନର !

□

# ଶୁଦ୍ଧ ମଣିଷ

ଅଧିକାଂଶ ବେଳ
ମନ ଭିତରକୁ ପଶିଆସେ ବୋଉ
ପୁନିଅଁ ପର୍ବ, ପୂଜା ପାର୍ବଣ
କଥା ଲଥା, ତା'ର ଗେହ୍ଲା
ମୋ ନିଦୁଆ ଦେହକୁ
ଅଧା ଅଧା ନିଦ ଉଜାଗର ।

'ଦେବୀ'ନଈ କୂଳରେ ଜନ୍ମ
'ଇବ୍' ନଦୀ କୂଳରେ ସଂସ୍କାର
ଜୁଇ ପାଖରେ ବାପାଙ୍କର ।

ବର୍ଷା ଖରାରେ ଘାଣ୍ଟିହେଇ
ସେ ଘର ସଜାଡ଼େ
ମତେ ବିଭାକରେ
ଦେହ ମୁଣ୍ଡ ହେଲେ ଜଗିବସେ
ମୁଁ ବି ତାର ଅସୁସ୍ଥତାରେ
ମଳମୂତ୍ର ଧୁଏଁ
ହେଲେ ଏ ସଂସାରର ଗୁଡ଼ିଏ ଲୋକସ୍ୱାର୍ଥପର
କହନ୍ତି ଯାହା ନିଜର ନିଜର
ଉପର ଦେଖାଣିଆ କେବଳ-
ବୋଉ ଏସବୁ ବୁଝେନା
କି ଶୁଦ୍ଧ ପୂତ ମାନବାତ୍ମା !
ଯେତେ ଅନିଭୋଗ, ଦୁଃଖ
ଏଇ ଶୁଦ୍ଧ ମଣିଷର ।

ମୁଁ ଭୁଲିପାରେନା
ଧିକ୍କାରେ ନିଜକୁ
ଛଟପଟ ହୁଏ କାନ୍ଦେ !

ସହାନୁଭୂତିର ଆଲୁଅଟେ ଜଳେ ନିଭେ-
କରିପାରେନା କିଛି
ରଡ଼ି ପକାଇ କାନ୍ଦେ
ଏ କଥା ସତ
ମୃତ୍ୟୁକୁ କିଏ ନିଜ ବଶରେ ରଖିପାରିଛି ।
ତଥାପି-

□

# ପାର୍ବଣୀ ପ୍ରତିମା

ତୁମ୍ଭ ସାମ୍ନାରେ ସେଦିନ
ଯୋଡ଼ ହାତ ଥିଲା ମୋର ଯାଚନା,
ତୁମରି ଭଳି କଲ୍ୟାଣ-କାମୀ, ବିଚାରଶୀଳା
ଶକ୍ତିମତୀ କନ୍ୟା,
ତୁମେ କିନ୍ତୁ ଭାବିଲ ନାହିଁ
ମୁଁ ସାରା ଦିନ ଏକାକୀ
ଯାହା ପାଇଲି, ତା' ହରାଇଲି
ଏକା ଏକା ବସି ଗୀତ ଗାଉଛି ଏଇଲେ
ପ୍ରାର୍ଥନା କରୁଛି, ଶୁଣିବାକୁ କେହି ନାହିଁ;
ବାନ୍ଧବୀ ମୋର କହିଥିଲେ ଏକଦା
ତୁମକୁ ଏକା କରିଦେଲେ ମାଆ,
କାହିଁକି ନା,
ତୁମେ ଏକାଥିଲେ ହିଁ ତୁମ ପାଖକୁ ଆସିବେ ସେ !

ବାର ବାର ଆସିବେ, ସତ କି ? ସତ ? ଆସ ଯଦି,
ସବୁ ମଣିଷଙ୍କ, କୀଟପତଙ୍ଗଙ୍କ ଦୁଃଖ ହରି ନିଅ,
ମୋ କଥା ଛାଡ଼, ମୁଁ ତ ଚାହିଁ ବସିଛି ତୁମକୁ;
ଆସିବ ଯଦି ଆସ ମାଆ, ଆଜି ଆସ ।



# ମାଆ

ତୁମେ ମାରିଦେଇ ପାରିବ ନାହିଁ ସେ ଶବ୍ଦକୁ ।
ବୟସ୍କା ମାଆର ଅଲ୍ୟଳ କୋଳକୁ
ଚୀରିଦେଇ ଛୁରୀରେ ତୁମେ
ଗଛର କଅଁଳ ଡ଼ାଳକୁ ଛେଦିପକାଇ ପାର,
ପ୍ରେମପୂର୍ଣ୍ଣ ଆଖିକୁ ଫୁଟାଇ ଦେଇପାର
ନିର୍ବିବାଦରେ,
ହେଲେ, ଆଜିପରା ଦିନରେ
ଈର୍ଷାରେ, ହିଂସାରେ
ତୁମ ଜନ୍ମଦିନରେ ତୁମେ ଅସ୍ୱୀକାର କରିପାର
ମାଆକୁ,
କିନ୍ତୁ ମାଆ ଶବ୍ଦର ନିବିଡ଼ତା, ବ୍ୟାକୁଳତା
ଓ ନିଃସର୍ତ୍ତ ପ୍ରାର୍ଥନାକୁ ବନ୍ଦୀକରି ପାରିବ ନାହିଁ କେବେ-
ପର୍ଶୁରାମଙ୍କ ପରି
ଇତିହାସ, ପୁରାଣର ଅନ୍ଧାରୀ ଅକ୍ଷରରେ
ଧିକ୍ କାର ଭିତରେ
ତୁମେ ଭଲ ପାଇବ ରହିବାକୁ ?
ବାହାର ଚକଚକ୍ୟ ଭିତରେ ଯଦି
ଲୁହବୁନ୍ଦାଏ ନିଗିଡ଼ିପଡ଼େ
ଛାତି ଭିତରେ ଜୁଳଜୁଳଥାଏ
ସେ ବୁନ୍ଦାଟି
ମାଆର ବୋଲି ବୁଝିନିଅ ।

□

# ନିମଗଛରେ ଫୁଲ ଫୁଟିଚି

ନିମଗଛରେ ଫୁଲ ଫୁଟିଲେ
ତୁମେ ମନେ ପଡ଼
ମୋ ଶୋଇଲା ଘର ଝର୍କା ବାହାର
ଝଂକା ନିମଗଛରେ ଧଳାଫୁଲଙ୍କ ଭିଡ଼
ମିଠାବାସ୍ନା, ଭଅଁର, ଗୁଣୁଗୁଣାଏ ମୁଁ କେତେଥର ।

ଆକାଶରେ ଛୋଟ ଛୋଟ ବଉଦ
ଭାସୁ ଥାଆନ୍ତି କି ନା' କେଜାଣି-
ତୁମେ ତ ଜାଣି ନଥିବ ବୋଧେ
ଏବେ ଋତୁଚକ୍ର, ଆଗପରି ଆଉ ନାହିଁ-
ବସନ୍ତରେ ନିମକଢ଼, ଅଥଚ ବୈଶାଖର ତାତି-
ଫୁଲଗଛର ଚଉକତି
ଚାଲିଯାଏ ସ୍ତ୍ରୀ ଲୋକଟେ
ଅଳତାରଂଗ ପାଦ ଉପରେ ଶାଢ଼ି
ନିମ ଫୁଲର ବାସ୍ନା ଚଉକତି ।
ଏଇତ ଆମ ଦିନରାତି ।

ଆଉ ଭାନୁମତୀର ଶ୍ୟାମ ସ୍ନିଗ୍ଧ ଚରା !
ତା' ଉପରେ ବଣୁଆ ନେଳିଆଫୁଲ-
ଏବେ କ'ଣ ଥିବ ଆଉ ସେ ଚଉତରା !
ଏବେ ତ ବଡ଼ ବଡ଼ ପ୍ରାସାଦ
ଖୁନ୍ଦା ଖୁନ୍ଦି କଂକ୍ରିଟ୍‌ର,
ଗାଡ଼ିଆ କି ଝିଲ ନାହିଁ କୋଉଠି ।

କାକଜୋସ୍ନାର ନିର୍ଲ୍ଲଜ ଛଳନାରେ
ମୁଁ ଛଂଦି ହେଉଛି କେତେବାର
ତୁମେ ପ୍ରଶ୍ନ କରିଥିଲ
ଥିବ ନିଶ୍ଚେ ମୋରି ଭଳି କେତେ ଉତ୍ତର !

ଆଜିବି ନିମଗଛ ପେନ୍ଥା ପେନ୍ଥା ଫୁଲ ଧରିଲେ
ତୁମେ ମନେପଡ଼ ।

ମହାବିଂଧାଣି ଓଡ଼ିଆ ଭାଷା ଶବ୍ଦର
ଉଜ୍ଜ୍ୱଳ କାରିଗର-
ଓଡ଼ିଆକୁ ତ ଆଜି ଘରେ ବାହାରେ
ଦୂର୍ ଦୂର୍, ଛାତିକୁ କାଟେ ଭାରି ।
ତଥାପି, ମୋ ମନତଳେ
ତୁମ ବିହ୍ୱଳ ସ୍ୱର
ହାବୁକା ହାବୁକା ବାସ୍ନା ନିମଫୁଲର ।

(ମଣିଷର ମହାକବି- ସଚ୍ଚିରାଉତରାୟ ଙ୍କୁ ନିବେଦିତ)

□

# ମହାନ୍ ଆତ୍ମା

ମହାନ୍ ଆତ୍ମା
ମଣିଷ ଦେହ ଧରିଲ-
ପୁଣ୍ୟ ଭୂମି ଭାରତର ପଶ୍ଚିମାଶାରେ,
ଚିହ୍ନିଲେ ବିଶ୍ୱ ସକଳ ।

ମୁଁ ଦେଖିଚି ତୁମ ଷଠି ଘର
ଯାଇଚି ପୋର ବନ୍ଦର
ଦୋ'ତାଲାର ସେ ଲମ୍ବା ବଖରେ ଘର
ଚାରି ପାଞ୍ଚଟି ଝର୍କା
ଦୁଇହାତ ଲମ୍ବ, ହାତେ ଓସାର ।
ତା' ଭିତରେ ତୁମ ଆବିର୍ଭାବର ଚନ୍ଦ୍ର ମଣ୍ଡଳ ।

ପୁତ୍‌ଲି ବାଈଙ୍କ ରକ୍ତ...
କେତେ ଥିଲା ତେଜଦୀପ୍ତ
କେତେ ଅହିଂସ ପ୍ରଭୁଙ୍କଠାରେ ନିଛିଦ୍ର ବିଶ୍ୱାସ ।

ରଘୁପତି ରାଘବ-ପତିତପାବନ
ବ୍ରତ ଘେନିଲ ମହାମହିମ,
କେତେ ସଂଘର୍ଷ
ଟଳାଇ ପାରି ନଥିଲା ତୁମ ଟାଣପଣ ।

ଦାଣ୍ଡି ଠୁଁ ସାବରମତୀ–
ଆମ ମାଟି, ଅଧିକାର ଆମର
ଲୁଣ ମୁଠାକ ନହେଲେ ଯେ
ଆମେ ଲେଖିଯିବୁ
ଆପଣା ରକ୍ତରେ ଆମ ସାଧିକାର !

ବନ୍ଦୀ ଜୀବନ, କାରାଗାର
ସ୍ୱାଧୀନତାର ଝଣ୍ଡା ଆମର
କେତେ ନାରୀ, ସରଳା ଦେବୀ, ରମାଦେବୀଙ୍କ ପରି
ଆହୁରି ଲକ୍ଷଲକ୍ଷ ସଂଗ୍ରାମୀ ଭାରତମାତାର ।
ପାଗଳ ପରି ଛୁଟିଲେ
ଏକାତ୍ମ ସହଯୋଗରେ ।

କାରାଗାର, ଅହିଂସ-ସଂଗ୍ରାମ
ରୋଗୀ, ଦୁଃଖି ହରିଜନ
ସକଳେ ଜପିଲାଗିଲେ ତୁମନାମ
ସଂକଳ୍ପ ନେଲେ-ଲାଠିମାଡ଼
ବନ୍ଧୁକ ଓ ଅନ୍ଧକୂପରେ ।

ମହାନ୍ ଆତ୍ମା, ତୁମେ ତ ମଣିଷ ଥିଲ
ଆଣ୍ଠୁଲୁଚୁ ନଥିବା ଖଦି ଓ କାରାଗାରର
ଶପଥରେ
ଆଦ୍ୟପ୍ରାନ୍ତ ଦେଶରେ
ଜୟ ଯାତ୍ରା ତୁମର-
ଅସଂଖ୍ୟ ଉଦ୍‌ବୋଧନ,
ତୁମ ରଚନାର ଚିନ୍ତାମଗ୍ନ ଉଚ୍ଚାରଣ,
ଲଲାଟେ ଆମର ଗୌରବର ଦୀପ୍ତଚିହ୍ନ ।

ତୁମର ଶେଷ ଶପଥ
ଛନ୍ଦି ହୋଇ ପଡ଼ିଲା, ବାପୁ,
କେତେ କୂଟ କପଟ ସୃଷ୍ଟିମେୟର !
ମହାନ୍ ଆତ୍ମା- 'ହେ ରାମ'
ତୁମ ଶେଷସ୍ୱର ।

□

# ସମୟ ଗଡ଼ିଯାଏ

ମୋ ଛାତି ତଳର ଯେଉଁ ବିରାଟ ଖାଲିଜାଗା
ସାରା ଦେହରେ ବି ଅରା ଅରା ଖାଲିଜାଗା
କେତେ ନରମଖରା, କୁତୁ କୁତୁ ପବନ
ପତ୍ରଝଡ଼ା କେତେ ପୁଣି ଶାଗୁଆ ଛନଛନ
ସବୁ ଉଭେଇଯାଏ କ୍ଷଣକେ
କିଏ କୋଉଠି
ରାହାଧରି ଡ଼ାକେ-

ତୁହାକୁ ତୁହା କହେ
ଯାହା କରିଚ, କିଛି ବିଚାରିନାହଁ
ତୁମେ ଅବିଚାରୀ ନୁହଁ ତ କିଏ ?
ଏଣିକି ପ୍ରାୟଶ୍ଚିତ୍ତ କର ।

କିଏ ବା ଆଜିର ପ୍ରଜନ୍ମ
କ୍ଷମା କରିଦଉଚି କାହାକୁ ?
'କ୍ଷମା' ଶବ୍ଦ ଅଛି କି ସଂବିଧାନରେ ?
ଥିଲେ ଥିବ ସାଧୁସନ୍ଥଙ୍କ ହୃଦୟରେ
ଅବିଚାରୀ ଭୁଲ୍ ବୁଝେ ନିଜର,
ସମୟ ଗଡ଼ିଯାଏ ତା' ନିଜ ବାଟରେ ।

□

# ସୋହାଗ

ତୋ ଛାତିତଳେ ଫ୍ରକ୍ ଭିତରେ
ଫୁଟିଚି ଫୁଲ
ଦି'ଟି କଅଁଳ ସଜ ଛତୁପରି ।
ସମସ୍ତେ ଅନାଇଁ ରହିବେ ଏଣିକି
ହେର୍‌ଫେର୍ ହେବେ ଆଖପାଖ
ତାଙ୍କ ବ୍ୟାକୁଳତା ସତ କି ମିଛ
ସହଜ ନୁହେଁ କଳିବା,
ସେମାନଙ୍କ ମୁହଁଟି ମାନ ଅନ୍ତରଂଗ
କି ଦେଖାଣିଆ ସୋହାଗ ଯେ
ବୁଝିବୁ ତୁ ରହିରହି
ବହୁତ ପରେ ।
ଚିହ୍ନି ହୁଏନା ବୋଲିତ
ଦୀର୍ଘଶ୍ୱାସ ମିଶିଯାଏ
ଶୂନ୍ୟରେ
କେତେ ଛଟପଟ ମୁଣ୍ଡପିଟେ
ପବନ ପିଠିରେ ।

ଏଣେ
କେତେବେଳେ
ଅଭିସନ୍ଧି ତୋତେ ଉଙ୍କିଝୁଙ୍କି କରେ ।



## ନଈର ଗୋଟେ ନାଆଁ କଅଣ ?

ବିରୂପା ନଈ, ଦେବୀ ନଈ
ସାହସୀ, ସମାଜ ସଂସ୍କାରକ ଅଜାମୋର ବୁଝିଥିଲେ
ନଈ କେଡ଼େ ଗଭୀର-
ନହେଲେ, ନଈ ତ ନଈ
ତା'ର ଗୋଟେ ନାଆଁ କଅଣ ?
ଆଜି ଅଛି ସେ ନାଆଁ
ବାଟ ଭାଙ୍ଗିଲେ, କାଲିକି ନାହିଁ ।

ଦାଣ୍ଡଧୂଳିରେ ଶିରିଶିରି କାକର
ସୋରିସୋରି ଖରା
ଗଛରୁ ଠପ୍‌ଠପ୍ କାକର ଟୋପା ।

ଯେ ଶୀତରେ ଦେବୀନଈ ଲୁଗା ହକାଲେ,
କିଛି ଦୂରରେ 'ବିରୂପା'
କଥା କହେନା ବହିଗଲେ-
ଠିକ୍ ଯେମିତି କେତେକେତେ ଉସ୍ମର ପାଣି
ଡେଇଁପଡ଼େ ସମୁଦ୍ର ଛାତିକି
କେତେ ମନ ଅରମାନ
ଲିଭିଯାଏ କାଲିକି ।

☐

# ଏଇଠି ଅଛି, ଏଇଠି ନାହିଁ

ଆଞ୍ଜୁଳା ଆଞ୍ଜୁଳା ଫୁଲ ଅଜାଡୁଥିଲେ ଯିଏ
ସେମାନେ ଛାଡ଼ି ଚାଲିଗଲେଣି
ନାଁ ମୁଁ ନିଜେ ଛାଡ଼ି ଆସିଲି
ସେଇ ଫୁଲ ଆଞ୍ଜୁଳାମାନଙ୍କ ବନ୍ଧନ- ?

ଆଜି ମନେପଡୁଚି ସେଦିନ
ଘୋର ବର୍ଷା ଛେଚୁଥିଲା ବେଳେ ଛଣଛପର
ଆଖିପତାକୁ ମାଡ଼ି ଆସୁଥିଲା କୋଉ ଛଟକରେ ନିଦ
ଡ଼ାକିଲେ ବି ଝାଂକି ଦଉଥିଲା ଦିହ ।

ଭାବୁଥିଲି-ସରନ୍ତା ନାଇଁ ଏ ରାତି
ଶଢଙ୍କ ଖେଳୁଆଡ଼ ପଣକୁ ମୁଁ
ଦେହ ମନରେ ଭୋଗି ନିଅନ୍ତି-
ସୁନା ତାରରେ ଗୁନ୍ଥି ବସନ୍ତି
ସୂକ୍ଷ୍ମ ସୁନ୍ଦର କରି ତାଙ୍କୁ ।

ଏଇଲେ ବ୍ୟସ୍ତ ଡ଼ାକ୍ତରଟିଏପରି ତରବର
ଚଂଚଳ ନିଦ-
ଦୂରେଇ ଯାଉଚି ମୋଠୁଁ ।
ଦୟାଭାବଟି ହଜିଯାଇଚି ତା'ର ।
ସେଇଥିପାଇଁ ଘୋଟି ଆସେନା
ଆଜିକାଲି ସେ ।

ଯାହାର ଆଦର, ଆଶ୍ୱାସନାର ହାତ
କଥା ପଦେ ନକହି ଫେରିଗଲା
ନିଶ୍ଚେ ହାତ ତାର ଥିଲା,
ଆଦର କି ଆଶ୍ୱାସ ନଥିଲା-

ମିଛପଣର କି' ଛଇ
ସତେକି ଏଇଠି ଅଛି, ଏଇଠି ନାହିଁ-
ଘାସ ପତରମାନେ ମଥା ନାଡ଼ନ୍ତି-
ଝଡ଼ି ପଡୁଥିବା ପତ୍ର
ଚୁପ୍‌ଚୁପ୍ କହନ୍ତି
ହଁ, ହଁ, ତୁମେ ଯାହା ଭାବୁଚ
ତାହା ହିଁ ।

କାଲି ଯିଏ ପ୍ରିୟ, ହୃଦୟ-ହର ଥିଲା
ଆଜି ସେ ନାହିଁ-
ତୁମେ ତା' ହାତକୁ ଛାଡ଼ି ଆସିଲ
କି ସିଏ ତୁମ ହାତକୁ ଛାଡ଼ିଦେଲା ।
ସେ କଥା ତୁମଛଡ଼ା ଭଲା
କହିପାରିବ କେହି ?

□

## କୁହନା ସେ କଥା ଆଉ

ଦୂର ପାହାଡ଼ ଛାତିରେ ଲଟ୍‌କି ଯାଇଚି
ଅଧା ଜହ୍ନ
କୁହୁଡ଼ି ଭିତରେ ଚାଲି ଯାଉଚି କିଏ ?

କୁଞ୍ଚ କୁଞ୍ଚ କେଶ ତା'ର ଝୁଲେ
ଅଜଣା ରଂଗର ପଣତ ଯେ
ଅନ୍ଧାରରେ ବାରିହୁଏ ନାହିଁ-
ଡ଼ାକି ଆଣିବାକୁ ତାକୁ
କଣ୍ଠ ମୋର ଖୋଲେ ନାହିଁ ।

ଏକୁଟିଆ ସ୍ତ୍ରୀଲୋକଟେ,
ଅଧରାତି, କିଏ ଅବା ଡ଼ାକିଦବ-
ଶୁଣ୍, ପଦେ କଥା
ଯିବୁ କି ସେ ପାହାଡ଼ ତଳିକୁ
ଗୁମ୍ଫା ଭିତରକୁ
ସାଙ୍ଗରେ ଯେ ମୁଁ
ତୋର ଆଉ ଡ଼ର ଭୟ କାହାକୁ ?

ସାରାଦିନ ବିତିଗଲା ଡ଼ରି ଡ଼ରି ଏଇ
କ୍ଷୟଶୀଳ ଦେହକୁ ଅଥଚ
ଡ଼ର ନାହିଁ, ଦେହଟା ବି ନାହିଁ ।
ନିଷ୍ଠୁରତା, କ୍ରୂରତା ଓ ମିଛପଣ
ଲୋକଦେଖାଣିଆଁ ସୁନ୍ଦର କଥା ପଦକ
ଆଉ ଲୋଡ଼ା ନାହିଁ ।

ତୁମେ କହିଥିଲ,
କାନ୍ଦୁଚ ନିହାତି ଯଦି
ଲୁହତକ ରଖିଥିବ
ଦିନେ ଯାଇ ପୋଛି ଦେବି
ପାପୁଲିରେ ମୋର ।
କି' ଅଜବ୍ କଥା ଯେ ତୁମର !

ଲୁହ ତ ଅସଂଭାଳ ନିଜ ଓଜନରେ ନିଜେ
ଗାଲରେ ଛାତିରେ କି ପଣତକାନିରେ
ଖସିପଡ଼େ, ଶୁଖିଯାଏ,
ତୁମେ ତାକୁ ପୋଛିପାରିବ କେମିତି ଯେ !

□

## ଉଲ୍ଲାସ ଆଉ ଲୁହ

ଟିକିଟିକି ଧଳା, ହଳଦୀ ପ୍ରଜାପତି
ଥର୍ଥର ଉଡ଼ି ଲାଗିଛନ୍ତି
ଦୁଇଟି ମଲ୍ଲୀଫୁଲ, ସେବତୀ ଫୁଲ ଯେମିତି
ଡ଼େଣା ଲାଗିଯାଇଚି ତାଙ୍କ ଠିଁ ।
ଚୁପ୍‌ଚାପ୍ ପତ୍ର ଉପରେ ନିଥର କଂକି ।

ବଡ଼ ସାନ ହଳଦୀ ବସନ୍ତ ଦୁଇଟି
କୋଉଠୁ ଆସିଲେ କେଜାଣି
ଉଚ୍ଚାଗଛର ତଳ ଡାଳରେ ଖୁଜୁବୁଜୁ
ମାଆଟି ବୋଧେ ଉଡ଼ାଣ ଶିଖାଉଚି ଛୁଆକୁ ।
ଜଂଗଲ ସବୁ ପଦା
ଯୋଉଠି ବଳିଛି କିଛି, ସେଇଠି-
ମୋ ଆଖିରେ ଉଲ୍ଲାସ ଆଉ ଲୁହ
ଆସିଯାଉଚି ଏକାଠି ।

ହଠାତ୍ ଆଂଗୁଳିରେ ଛୁଇଁଦେଇ
ଉଭାନ୍ ହୋଇଗଲା ସେ
କେତେ ଖୋଜିହେଲି, ମୋର ସ୍ନାୟୁ
ଶିରା ପ୍ରଶିରା ଛଟପଟ ଡାକଦେଲେ
ଅଥଚ କେହି ଶୁଣିପାରିବ ନାହିଁ ସହଜେ
କିନ୍ତୁ କାହିଁ ସେ ?
ମତେ ଦେଖାଦେଇନି ସେ ଏବର୍ଷ ।
ପଦ୍ମଫୁଲ ମାଳ କେତେ ମୋର
ମୋର ଉଜ୍ଵଳ ମୁଖ
ଝାଉଁଳିଗଲା-
ସେ ଆଉ ଆସିବ ନାହିଁ ସତେ ?

ଶବ୍ଦଙ୍କ ପିଠିରେ ବସି
ଅଶବ୍ଦ ଲୋକରୁ ଉଡ଼ିଆସିବ ନାହିଁ ଯଦି
ଭାଙ୍ଗିପଡ଼ିବ ଭିତରଟା ମୋର
ଧୂଳିହେଇଯିବ ଏଥର-

ଚାଉଁ ଚାଉଁ ଛାଟ ବାଜୁଚି ଛାତିରେ
ଉପଯୁକ୍ତ ଯେ ଦଣ୍ଡ
ଅହଂକାରୀ ମୋର ଅନ୍ତଃସ୍ଥଳରେ ।

□

## ନୂଆଘର ଖଣ୍ଡି ଦିନେ...

ଝିଲ୍‌ମିଲ୍ ଚୁନା ଧଉଳା କାନ୍ଥ
କବାଟ ଝର୍କା ଉଜ୍ଜ୍ୱଳ
ଯେ ଘରକୁ ଗଢ଼ିଥିଲା ବୋଉ ମୋର
ସବୁତକ ରକ୍ତ, ସ୍ୱେଦ, ଲୁହ ଅଜାଡ଼ି
ନିତିପଡ଼ ଧଉଳୁଥିଲା-ଅଥଚ ଆଜି
ଖାଲି ଚୁନ ସୁରକି ଖସିପଡୁଥିବା
ଭାଂଗାଇଟାର ଟହଟହ ହସ-
ଯେ ଘରେ ଭଲା ମନଲାଗିବ କାହାର ?

ବାହାରି ଯିବି ବି କୁଆଡ଼େ ?
ପୁଣି ଯଦି ଡ଼ାକ ମାରିଲା କିଏ
କହିଯା' କହିଯା, ଫେରି ଆସିବୁଟି-
ଫେରିବି ଯଦି ତୁମେ ନ ଥିବ
ନଥିବ ସୁନେଲି ଡୋରଟିଏ ବି
କ'ଣ ଥିବ ଆଉ ବାକି ?

ହଁ ଚାଲିଯିବି ତ ନିଶ୍ଚେ
ପ୍ରତିଟି ପାହୁଣ୍ଡରେ ଫୁଲ ଛାଟି ଛାଟି
ରଂଗ ବେରଂଗ ଅସୁମାରି ବାସ୍ନାଫୁଲ
କହି ଦେଇଯିବି-
ମୁଁ ଯାଉଚି ସତ
କିନ୍ତୁ ଜାଣିଚି-ତୁମ ଗର୍ଭକୋଷରୁ
ଉକୁଟି ଆସିବ ବାସ୍ନା, ମହୁମାଛିଙ୍କ ଗୁଣୁଗୁଣୁ,
ପତ୍ରରେ ତୁମର ଆଂଜୁଳା ଆଂଜୁଳା ଲାଜ,
ଉହୁଁକି ଆସିବ କଢ଼, ପାଖୁଡ଼ା ମେଲିବ-
ଡାକିବ ପ୍ରଜାପତିଙ୍କୁ, ମନୋହର ପତଙ୍ଗଙ୍କୁ
ନୂଆ ଫଳର ମିଠାରସରେ ଭେଦିଯିବ ମାଟି
ଆହୁରି ସୁନ୍ଦର ଦିଶିବ ସାରା ବାଟ-

କେତେକେଜାଣି ନୂଆ ମୁହଁ
ସୂର୍ଯ୍ୟର ଗୀତଗାଇ ହସ ହସ
ସ୍ୱାଧୀନ, ନିଡ଼ର ସ୍ୱର
ଗୁଂଜରିବ ଦିଗ୍ ବିଦିଗ

ବିମୋହିତ ଶବ୍ଦମାନେ ଖସି ଆସିବେ-
ଶେଷ ସୃଜନଶୀଳତାର ଶବ୍ଦଟି
ଲାଲ୍ ଟକ୍ ଟକ୍ ପୁନେଇଁ ଜହ୍ନଟି ପରି
ଦୋହଲିବ, ଓହ୍ଲେଇବ ଥର୍ଥର ।

ସେତେବେଳକୁ ମୁଁ କାହିଁ କେତେ ଉଶ୍ୱାସରେ
ଭାସି ଯାଉଥିବି ଉପରୁ ଉପର ।

□

# ଲେଉଟି ଆସେନା ଯାହା

ସେଦିନ ମୋ କାନ ପାଖରେ କହିଦେଲ ଚୁପିଚୁପି
ଦେଖ୍, ଯାହାକୁ ତୁ ଆଶ୍ରା କରିଥିଲୁ,
ସେ ଭାଙ୍ଗି ପଡୁଚି-ଏତେ ଗଭୀରରେ
ବାଜୁଥିଲା ତୁମ କଥାପଦକ ଯେ
ଆଜିଯାଏ ବି ଆଘାତ ତା'ର ଭୁଲି ହଉନି,
କିନ୍ତୁ ମୁଁ ଶୁଣିଲିନି-
ଅଧା ଶୁଣା, ଅଧା ଅଶୁଣା ବି ନୁହେଁ
ଆଦୌ ଧ୍ୟାନ ଦେଲିନି-

ସକାଳୁଆ ମନ୍ଦାର ବୁଦାରେ
ଆଙ୍ଗୁଠି ସମାନ ଚଢ଼େଇଟିଏ
ଉଡି ଉଡି କ'ଣ ସବୁ ଟୋକୁଥିଲା
ତାର ସରୁ ଖଡ଼ିକା ପରି ଥଣ୍ଟରେ-
ସେଥିରେ ବି ତୁଚ୍ଛ ସଂକଳ୍ପ ଟଳିଲାନାହିଁ ମୋର ।

ଆଜି ମନେପଡୁଚି ସେ ଚୁପିଚୁପି କଥା
ତା' ତୀକ୍ଷ୍ଣଧାରରେ ମୁଁ କଟିଯାଉଚି,
ଲୁହ ରକ୍ତରେ ଭିଜିଯାଉଚି ଗୋଟାପଣେ-
ଅତୀତ କ'ଣ ଏଇଆ
ଝୁରି ମରିଲେ ବି ଲେଉଟି ଆସେନା ଯାହା ?
କେଜାଣି ଏଠି ଥିବା ଯାଏ ତ
ଏମିତି ଲାଗି ରହିବ ଛଟକ
କାକର ଟୁପ୍‌ଟାପ୍ ଝରୁଥିବ
ଆଖି ମିଟି ମିଟି ତାରା-
ନ ହେଲେ, ଘନ ଜଙ୍ଗଲରେ
ଗାଡ଼ି ବିଗିଡ଼ିଗଲେ
ଉପରକୁ ଅନାଇଁ ଦିଅ ତ
ତାରାମାନଙ୍କ ସୁମଦ୍ର-
ସବୁଜ ପାଣି ଭିତରେ ସତେ କି ଦୋହଲୁ ଥିବେ
ଝକ୍‌ମକ୍ ଉଜ୍ଜ୍ୱଳ ।

ତୁମର ଲୁହ ଡବ୍ ଡବ୍ ଆଖି
ଭୁଲି ରହିଲି କେମିତି ?
ଏଥର, ତୁମ ଅର୍ଥବହ କଥାପଦକ
ଦହୁଥିବ ମରମ
କବିତା ବି ନାଚୁଥିବ ମୋର ଚାରିପାଖେ
ମୁଁ ନିଥର ନିର୍ବାକ ହୋଇ
ଚାଲିଯାଉଥିବି ସନ୍ତାପର ବୋଝତଳେ
ପଣତରେ ଘୋଡ଼ାଇ ରଖି ମୋର ସରମ-
ସାମ୍‌ନାରୁ ଆସୁଥିବା ଭବିଷ୍ୟ ଆଡ଼କୁ ।

□

# ଗତ, ଆଗତ ସ୍ୱପ୍ନ ଯେତେକ

ସେ ଠିଆ କରାଇଦେଲା
ଯେତେ ପ୍ରପଞ୍ଚ ନିଷ୍ଠୁରତାକୁ ନିଜର
ନତଜାନୁ ହେଲା, 'ଅପ୍ରାଧ କ୍ଷମାକର' କହିଲା-

ତା'ପରେ ସକଳ ସନ୍ତାପ ଓ ଯାତନାକୁ
ଟାଣି ଆଣିଲା ସାମ୍ନାକୁ
ଗୋଟି ଗୋଟି ଶରବିଦ୍ଧ କଲା-
ରକ୍ତାକ୍ତ ଅବଶୋଷ, ଅବସାଦ ଘୂର୍ଣ୍ଣିରେ
ଛିଡ଼ାହେଲା ଅବିଚଳ
କହିଲା- ଦିଅ, ଆହୁରି କର୍କଶ ବଚନରେ
ଚୀରିଦିଅ ମୋର ଶିରାସ୍ନାୟୁ
ପାରିବ ଯଦି ଫିଙ୍ଗିଦିଅ ଅପନ୍ତରାରେ
ହେଲେ ମୁଁ ଜାଣେ
ତୁମେ ନିଃଶେଷ କରିଦେଇ ପାରିବନାହିଁ
ମୋର ଶ୍ରେୟକୁ ।

ତା'ପରେ ବି
ଯାହା ଅବଶୋଷ ରହିବ
ଫେଣ୍ଟି ହେଇଯିବ ମାଟିରେ
ପାଣିରେ ଘାସ ବଣରେ
ବିଷବଳୟ
ମୋର ସନ୍ତାପିତ ଅନ୍ତର୍ମନର ବିଶୁଦ୍ଧତାରେ
ସୁବର୍ଣ୍ଣସ୍ରୋତ ହୋଇ ବୋହିଯିବ ।

ଆଉ, କୁନି ଘରଚଟିଆଟି
ଉଡ଼ିଯିବ ଉଚ୍ଚରୁ ଉଚ୍ଚକୁ,
ମୁଣ୍ଡ ଟେକିଥିବା ସଉଧ ଉପରକୁ,
ଶହେ ଚଢ଼େଇ ଉଡ଼ି ଆସିବେ
ସେଠି ଶସ୍ୟଥିବ, ସୋରିଷ ଥିବ
ପାଣି କଂସାଏ ଥିବ-
ମୁଁ ବି ସେଇଠି କୋଉଠି
ଛପି ରହି
ନୂଆ ସ୍ୱପ୍ନକୁ
ଘଷି ମାଜି ତେଜି ଦେଉଥିବି ।

□

## କବି ଡ଼କ୍ଟର ପ୍ରତିଭା ଶତପଥୀଙ୍କ କୃତି ଓ କୃତିତ୍ୱ

**ମାର୍ଫତ୍ : ଡଃ ଦେବାଶିଷ ପଟ୍ଟନାୟକ**

**୧, ଗ୍ରିନ୍ ପାର୍କ, ପଟିଆ ଷ୍ଟେସନରୋଡ଼, ପୋ: କିଟ୍ (K.I.I.T) ଭୁବନେଶ୍ୱର-୨୪**

ପିତା ୰ ଡଃ ଚକ୍ରଧର ଶତପଥୀ

ମାତା ୰ ହରିପ୍ରିୟା ଶତପଥୀ

ଗ୍ରାମ- ସତ୍ୟଭାମାପୁର, ଜି-କଟକ

ଜନ୍ମ- ୧୯୪୫

**୧-କୃତି**

**କାବ୍ୟ କବିତା:**

- ଅସ୍ତ ଜହ୍ନର ଏଲିଜି (୧୯୬୯)
- ଗ୍ରସ୍ତ ସମୟ (୧୯୭୪)
- ସାହାଡ଼ା ସୁନ୍ଦରୀ (୧୯୭୮)
- ନିୟତ ବସୁଧା (୧୯୮୦, ୧୯୮୫)
- ନିମିଷେ ଅକ୍ଷର (୧୯୮୫)- ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ (୧୯୮୬ )
- ମହାମେଘ (୧୯୮୮)
- ଶବରୀ (୧୯୯୧) ଇମ୍ପା ଶିଳ୍ପଗୋଷ୍ଠୀ ପ୍ରଦତ୍ତ ଶାରଳା ପୁରସ୍କାର ପ୍ରାପ୍ତ, (୧୯୯୨)
- ତନ୍ମୟ ଧୂଳି (୧୯୯୬)-କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ
- ଅଧା ଅଧା ନକ୍ଷତ୍ର (୨୦୦୧)-କର୍ଣ୍ଣାଟକର ଏନ୍.ଏନ୍. ଥିରୁମଲାମ୍ବା ଜାତୀୟ ପୁରସ୍କାର ପ୍ରାପ୍ତ, ୨୦୦୧ ।
- କହି ନ ହେଲେ (୨୦୦୬)
- ତୁମ ପାଇଁ ଥରେ, ସବୁଥର...(୨୦୧୧)
- ଜବା କୁସୁମ ସଂକାଶଂ (୨୦୧୬)

ନିବନ୍ଧ / ପ୍ରବନ୍ଧ/ ରମ୍ୟଗଳ୍ପ/ ଭ୍ରମଣ କାହାଣୀ/ ଜୀବନୀ/ ଆତ୍ମ ଜୀବନୀ/ ସାହିତ୍ୟ ସମାଲୋଚନା:

- କଳ୍ପନାର ଅଭିଷେକ (୧୯୮୦, ୧୯୯୮)
- ସ୍ପନ୍ଦନର ଭୂମି (୧୯୯୩)
- ପ୍ରତିଫଳନ (୧୯୯୩)
- ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ (୧୯୯୯, ୨୦୦୬) ଭାରତୀୟ ସମାଲୋଚନା ମଣ୍ଡଳୀ ପୁରସ୍କାର ପ୍ରାପ୍ତ)
- ଭାରତ ମାତାର ଲୁହ (୨୦୦୨)
- ବର୍ଣ୍ଣିଳ ଭୋଗପୁର... (୨୦୦୪)
- ସ୍ୱର୍ଗତା ସରଳାଦେବୀଙ୍କ ଜୀବନୀ (୨୦୦୮) ଏନ୍.ବି.ଟି. ଦ୍ୱାରା ପ୍ରକାଶିତ ।
- ଶୈଶବରୁ ସଂସାର (ଆତ୍ମକଥା)୨୦୦୮, ନୂତନ ପ୍ରକାଶ-୨୦୧୫
- ନାରୀ ଅସ୍ତିତ୍ୱର ବାସ୍ତବତା: ବିବର୍ତ୍ତିତ ଓଡ଼ିଆ କବିତା (୨୦୦୯)
- ନାରୀ ଜନ୍ମ (୨୦୧୫) ମନୋରମା ପ୍ରକାଶନ
- କବିତାର ଉଦ୍‌ଭାସନ ଓ ନବ୍ୟାଲୋଚନା (୨୦୧୫) ବିଦ୍ୟାପୁରୀ ।
- ଶ୍ରୀମତୀ ସରଳାଦେବୀଙ୍କ ବସ୍ତୃତ ଜୀବନୀ-ବିଦ୍ୟାପୁରୀ (୨୦୧୭)

ଅନୁବାଦ:

- ଅରଣା ସପ୍ନର ରାତି (ନୋବେଲ ପ୍ରାପ୍ତ ପର୍ଲବକ୍‌ଙ୍କ ଉପନ୍ୟାସ)
- କ୍ରୀତଦାସ (ନୋବେଲ ପ୍ରାପ୍ତ ଆଇଜାକ୍ ସିଂଗରଙ୍କ ଉପନ୍ୟାସ)
- କିଶୋର ପ୍ରେମିକ (ଚିଂଘିଜ୍ ଆଇତ୍‌ମାତଭଙ୍କ ଉପନ୍ୟାସ)
- ନଗର ମନ୍ଥନ (ଡ଼ୋଗ୍ରୀ ଉପନ୍ୟାସ, 'ସାରଥୀ'ଙ୍କର ) କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ ।
- କହ୍ଲଣ ଚରିତ (କାଶ୍ମୀରୀ କବିଙ୍କ ମନୋଗ୍ରାଫ୍) କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ
- ଭିନ୍ନ ଦେଶୀର ମୁହଁ (ଲାଟ୍‌ଭିଆନ୍ କବିତା ଅନୁବାଦ )
- ସୁବ୍ରମଣ୍ୟ ଭାରତୀ (ଏନ୍.ବି.ଟି. ଆନୁକୁଲ୍ୟରେ)
- ପ୍ରେମର ପାବନୀ ଫଲ୍‌ଗୁ- ଅନୂଦିତ ଉପନ୍ୟାସ ।

ସଂପାଦନା

- ରୁଚିପୂର୍ଣ୍ଣ, ଅଭିନବ କବିତା ପତ୍ରିକା 'ଉଦ୍‌ଭାସ'ର ନିୟମିତ ସଂପାଦନା ୨୦୦୩ ମସିହାଠାରୁ ।

- 'ଇସ୍ତାହାର' ପତ୍ରିକାର ସହଯୋଗୀ ସଂପାଦିକା ଭାବେ ୨୫ବର୍ଷ କାର୍ଯ୍ୟରତା ।

୨ -କୃତିତ୍ୱ

- ପ୍ରଜାତନ୍ତ୍ର ଯୁବ କବି ପୁରସ୍କାର ୧୯୬୨

- ଆକାଶପାଣି ତରଫରୁ Nationl Synposiun of poets New Delhi--1971

- ନିନିତାଲ୍‌ଠାରେ ସର୍ବ ଭାରତୀୟ ଲେଖିକା ସଂସଦର ବାର୍ଷିକୋତ୍ସବରେ କବିତା ପାଠ-୧୯୭୫

- ବିଷୁବ କବିତା ପୁରସ୍କାର ୧୯୮୧

- ରାଜ୍ୟ ସାହିତ୍ୟ ଏକାଡ଼େମୀ ପୁରସ୍କାର ୧୯୮୬

- କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ୨୦୦୧

- କର୍ଣ୍ଣାଟକର ଏନ୍.ଏନ୍. ଥିରୁମଲାମ୍ମା ଜାତୀୟ ପୁରସ୍କାର ୨୦୦୧

- କ୍ରିଟିକ୍ ସର୍କଲ ଇଣ୍ଡିଆ ପୁରସ୍କାର ୧୯୯୬

- S.B.I କବିତା ପୁରସ୍କାର

- SAIL କବିତା ପୁରସ୍କାର

- J.K. Paper କବିତା ପୁରସ୍କାର

- କବି ସୁଭଦ୍ରା କୁମାରୀ ଚୌହାନ କବିତା ସମ୍ମାନ (୨୦୦୭)
(ଜାତୀୟ ହିନ୍ଦୀ ଏକାଡ଼େମୀ, କଲିକତା ଓ H.R.D. ବିଭାଗ ନୂଆଦିଲ୍ଲୀର ମିଳିତ ଆନୁକୂଲ୍ୟରେ)

- ଉତ୍କଳ ସୂର୍ଯ୍ୟ ସମ୍ମାନ-ଏ.ଆର୍.ଏଫ୍ ତରଫରୁ (୨୦୦୮)

- କବି ସଚ୍ଚି ରାଉତରାୟ କବିତା ସମ୍ମାନ ୨୦୦୮-ଖୋର୍ଦ୍ଧା ଲୋକଉତ୍ସବ ତରଫରୁ

- ସାହିତ୍ୟ ପୃଥିବୀ ପୁରସ୍କାର ୨୦୧୧

- ଗଙ୍ଗାଧର ରଥ ଫାଉଣ୍ଡେସନ୍ ପକ୍ଷରୁ ସାହିତ୍ୟ ଭାରତୀ ପୁରସ୍କାର ୨୦୧୪

- ୨୦୦୩ରେ ଆମେରିକାର ନ୍ୟୁଜର୍ସିଠାରେ O.S.A.

- Rock Pebbles Poetry award

- ଯୁଗଶ୍ରୀ, ଯୁଗନାରୀ କବିତା ପୁରସ୍କାର

- କବି ଦୀପକ ମିଶ୍ର କବିତା ପୁରସ୍କାର

- ପ୍ରାଣନାଥ କବିତା ସମ୍ମାନ

- NALCO Foundation Day Award-2017

- ମଧ୍ୟପ୍ରଦେଶ ସରକାରଙ୍କ ଦ୍ୱାରା ଭୋପାଳ ଠାରେ ସନ୍ଥକବି କବୀର ସମ୍ମାନ

୨୦୧୭, ରାଷ୍ଟ୍ରପତିଙ୍କଠାରୁ ପୁରସ୍କାର ଗ୍ରହଣ ।

- ଅନ୍ୟାନ୍ୟ ଅନେକ ସାରସ୍ୱତ ଅନୁଷ୍ଠାନ ତରଫରୁ ସଂବର୍ଦ୍ଧନା ।

**ଇଂରାଜୀ ଓ ଭାରତୀୟ ଭାଷାରେ ପ୍ରକାଶିତ କବିତା ଗ୍ରନ୍ଥ :**

- ସମୟ ନହିଁ ହେଁ: ଚୁନୀହୁଇ କବିତାଏଁ-ଅନୁବାଦ: ପଦ୍ମଶ୍ରୀ ଶ୍ରୀନିବାସ ଉଦଗାତା ୧୯୯୪ ରାଧାକୃଷ୍ଣ ପ୍ରକାଶନ, ନୂଆଦିଲ୍ଲୀ ।

- ଶବରୀ, ଅନୁବାଦ: ପଦ୍ମଶ୍ରୀ ଶ୍ରୀନିବାସ ଉଦଗାତା ୧୯୯୬ ବାଣୀ ପ୍ରକାଶନ, ନୂଆଦିଲ୍ଲୀ, ୨ୟ ସଂସ୍କରଣ ୨୦୧୫ ।

- ଅଧା ଅଧା ନକ୍ଷତ୍ର-ଅନୁବାଦ: ଡଃ. ରାଜେନ୍ଦ୍ର ପ୍ରସାଦ ମିଶ୍ର, ୨୦୦୨, ମେଧାବୁକ୍ସ, ନୂଆଦିଲ୍ଲୀ

- ତୁମ୍ହାରେ ଲିୟେ ହରବାର- ୨୦୧୫ ବାଣୀ ପ୍ରକାଶନ, ନୂଆଦିଲ୍ଲୀ

- ତନ୍ମୟ ଧୂଳି-ଅନୁବାଦ: ଡଃ. ରାଜେନ୍ଦ୍ର ପ୍ରସାଦ ମିଶ୍ର, ୨୦୦୪, ୨୦୧୫ କେନ୍ଦ୍ର ସାହିତ୍ୟ ଏକାଡ଼େମୀ, ନୂଆଦିଲ୍ଲୀ, ପ୍ରକାଶନ ।

- A Time of Rising : Translation: Padmashree Poet Laureate Jayanta Mohapatra, Publisher: Har-Ananda Publication, New Delhi-2001.

- If Left Unsaid...translation by C.N.Swamy I.A.S. (Rtd) Publication Grassroots, Kolkata

- Enchanted Dust: Translation: R.P. Samal, Central Sahitya Academy, New Delhi.

- Dhoor Kamni (Punjabi): Translation: Dr. Vanita, Central Sahitya Academy, New Delhi.

- Magan Dhuli (Rajsthani) : Translation: Sri Atul Kumar Sharma, Central Sahitya Academy, New Delhi.

- Tanmaya Dhulee (Telugu) Tanslation : Prof. N. Gopi, Central Sahitya Academy, New Delhi.

- VASIKARIKKUM DHOOSI (Tamil) Tr. by Mrs. Madhumita, Central Sahitya Academy, New Delhi.

- ମରାଠୀ ଭାଷାରେ ଶ୍ରୀମତୀ ରାଧା ଯୋଗଲେକରଙ୍କ ଦ୍ୱାରା କେନ୍ଦ୍ର ସାହିତ୍ୟ ଏକାଡ଼େମୀ ତରଫରୁ ଅନୂଦିତ ହୋଇ 'ହେ ତନ୍ମୟ ଧୂଳି' ପ୍ରକାଶିତ ।

- Tanmaya Dhuli (Malayalam): -Trans. Poet Attoor Ravi Verma. Publication Sahitya Akademi, Chennai.

- ତନ୍ମୟ ଧୂଳି (ଗୁଜୁରାଟୀ)- Trans. Renuka Sriram Soni, Publication Sahitya Akademi, Western Zone.

- ବଂଗଳାରେ ଡଃ ମୃଦୁଳା ମିଶ୍ର ଓ ଡଃ ସିପ୍ରା ରାୟଙ୍କ ଦ୍ୱାରା ଅନୂଦିତ ଓ ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ।

- କୋଂକଣୀ ଭାଷାରେ ଅନୂଦିତ ଅନୁବାଦିକା: ନୂତନ ସଖର ଦାଣ୍ଡେ ପ୍ରକାଶିତ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ।

- ସାନ୍ତାଳୀ ଭାଷାରେ 'ମୋ ନ୍ ଗାଦାନ୍' ଅନୁବାଦିକା ଡଃ. ଦମୟନ୍ତୀ ବେଶ୍ରା ।

- ସମୁଦାୟ ୧୩ ଗୋଟି ଭାରତୀୟ ଭାଷାରେ 'ତନ୍ମୟ ଧୂଳି' ଅନୂଦିତ ଓ ପ୍ରକାଶିତ ।

- ଆସାମୀ ଭାଷାରେ ପ୍ରକାଶୋନ୍ମୁଖୀ ।



କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ପ୍ରଖ୍ୟାତ କବି ପ୍ରତିଭା ଶତପଥୀ, ଯାହାଙ୍କ କବିତାରେ ଧୀଶକ୍ତି, ଗଭୀରତା, ସାଂଗୀତିକତା, କାବ୍ୟିକ ମୃଦୁସ୍ପର୍ଶ (sweep) ଅନ୍ତରଙ୍ଗତା, ଶ୍ଳେଷ, ନିରୀକ୍ଷଣ ଶକ୍ତି, ପ୍ରଚୁର ଅଧ୍ୟୟନ ଏବଂ ସର୍ବୋପରି ଅନ୍ତର୍ନିହିତ (ଗୂଢ଼) ସଂବେଦନଶୀଳତା ଭରିରହିଛି । ସେଥିପାଇଁ ତାଙ୍କ କବିତା ପାଠକର ଆଗ୍ରହ ଦାବୀକରିଥାଏ ଓ ପ୍ରାପ୍ତ ହୋଇଥାଏ । ତାଙ୍କ ରଚନାରେ ଚେତନାର ଏକକ ଉଜ୍ଵଳତା ଓ ସତେଜତାକୁ ପାଠକ ସାମ୍ନା କରିପାରେ ।

ସ୍ପର୍ଦ୍ଧା ଓ ବିନୟ ତଥା ସାହସ ଓ ସହିଷ୍ଣୁତାର ସ୍ୱର ତାଙ୍କ କବିତାକୁ ପ୍ରାଣସ୍ପର୍ଶୀ କରିଥାଏ । ପ୍ରକୃତିର ଆତ୍ମାର ଉଦ୍ଭାବନ, ନିର୍ଜନତା, ମାନବୀୟ ସଂପର୍କର ନିବିଡ଼ତା ତାଙ୍କ କବିତା ପଠନ ଦ୍ଵାରା ହୃଦୟଙ୍ଗମ କରିହୁଏ । ଭାଷାର ଅଭିଜ୍ଞାନ ସହ ଏକାତ୍ମ ହେବା, ଭାଷାର ନୂତନ ଅଭିଜ୍ଞତାକୁ ସୃଷ୍ଟି କରିବା ଦ୍ଵାରା ତାଙ୍କ କବିତା ନମନୀୟ, ଜୀବିତ ଓ ଆନନ୍ଦମୟ ରୂପେ ପ୍ରତୀତ ହୋଇଥାଏ ।

- ପ୍ରକାଶକ





**AJARAAMARA**
**by Dr. Prativa Satpathy**

Published by
Paschima Publications,
1882, Nayapalli, Bhubaneswar,
Odisha-12
1st Edition: 2019
Price . 110.00



ISBN 978-81-89093-32-3